# ବିଜ୍ଞାପନ ।

—०—

ଧର୍ମ୍ମାଂଶସ୍ୟ ଭଗବଦ୍ଗିରନବଦ୍ୟାଦ୍‌ଭୂତବୋଧୋଚ୍ଚୟ-ପ୍ରଭୂତ୍ନତ ତତ୍ତ୍ୱ-ସଂଶୟଭୃତ୍ୟ ଯାଥାର୍ଥ୍ୟମାଲମ୍ବିତାଃ । ଭୂପାନାବମୃପାଶ୍ରିତାଃ ପ୍ରବଳ-ସଭାବାମୃତୋତ୍ପୂରତେ ଗ୍ରନ୍ଥାପାରପୟୋନିଧାବନୁଦିନଂ କ୍ରୀଡ଼ନ୍ତୁ ସଦ୍‌ବୁଦ୍ଧୟଃ ।୧। ପୂର୍ବସ୍ମିନ୍ନନୁବାଦହେତୁରଗିରା ପାପାତ୍ମନାଂ ପାବନୀ ସଂପ୍ରତ୍ୟୁତ୍କଳଦର୍ଶିତା ହୃତକଶ୍ମ ପାରାଶରୀଯ୍ୟା ସ୍ମୃତିଃ । ବ୍ୟାଖ୍ୟା ଭାବବଳା-ପୂର୍ବା କଣ୍ଡପଯୁସ୍ଥାନେଷ୍ୱବୋଧଂ ଗତା ପୂଜ୍ୟାଦ୍ୟସ୍ମୃତିରୁତ୍ତମା ସୁଖଯୁତୁ ପ୍ରଜ୍ଞାନ୍ ଜନାନ୍ ସନ୍ତତଂ ।୨। ସୂର୍ଯ୍ୟବଂଶୋଦ୍ଭବଃ ଶ୍ରୀମାନ୍ ରାଜା ରାଜୋ-ପମୋ ଗୁଣଃ । ସ୍ୱମସ୍ତଦାଦ ତନ୍ତ୍ରାନ୍ତ ଶବ୍ଦୋ ବେଦାକ୍ଷରାନ୍ୱିତଃ ।୩। ଶାରଃ ଯସ୍ତା ଦ୍ୱାରସ୍ଥାନ୍ୟେ ହରଚନ୍ଦନ ଇତ୍ୟପି । ନାମୋପାଧିର୍ଦ୍ୱୟଂ ଚୈବ ଶୋଭତେ ନର୍ବକଳ୍ପକଂ ।୪। ଏବଂ ନାମୋପାଧିମତା ଜାଳତେଜରମଣ୍ଡି-ଭୂଜା । ପ୍ରକାଶିତୋତ୍କଳଗିରା ଧର୍ମ୍ମପାରାଶରୀ ଶୁଭା ।୫। ଈଶ୍ୱରଃ କୁରୁତାଂ କାମନାଶା ହ ବଳବତ୍ତ୍ୱ । ତସ୍ୟାଃ ପୂରଣକାମାଯ୍ୟାନୁଗ୍ରହଂ କର୍ତ୍ତୁ-ମିଚ୍ଛତୁ ।୬।

ଅପିଚ ପାରାଶରସଂହିତା ସ୍ମୃତି ଆର୍ଯ୍ୟଧର୍ମ୍ମର ପ୍ରଧାନ ପଥଦର୍ଶକ ଏବଂ ଧର୍ମ୍ମସଂସ୍ଥାପକ ଅଟେ, ପ୍ରଜନ୍ୟ ସ୍ମୃତିର ଆର୍ଯ୍ୟଧର୍ମ୍ମର ସର୍ବତୋଭାବେ ଶ୍ରେୟଃପ୍ରଦ, ଅଥଚ ଧର୍ମ୍ମୋପଦୀପକ ବୋଲି ଲକ୍ଷ କଲେ ଅଳକ୍ଷର କାରଣରେ ଅକୃଷ୍ଟିତ ହେବ ନାହିଁ । ଶୀର୍ଷବନ୍ଦ୍ୟସ୍ଥ ସ୍ମୃତି ବଙ୍ଗାନୁବାଦ ଅଥଚ ବଙ୍ଗାକ୍ଷରରେ ସନ୍ନିଳିତ ଥିବା ବଶତଃ ଅନ୍ୟୁତ୍କଳବାସିମାନଙ୍କର ପାଠ୍ୟର କ୍ଲେଶ ବୋଲି ଜ୍ଞେୟ ହେବା ହେତୁତଃ ଉତ୍କଳାକ୍ଷରରେ ଅଥଚ ଭାଷାରେ ଅନୁବାଦ କରବାକୁ ସୌରାଂସର୍ଯ୍ୟତା ପ୍ରକାଶ କଲୁଁ ।

ଏହି ଉଡ଼ିଶାଜନରେ ଅନଗ୍ରନ୍ଥ ସର୍ବଦ ସ୍ଥଳରେ ବହୁବର୍ତ୍ତିତ ଥିବା ଅଶାଜାତ, ଉତ୍କ୍ରାନ୍ତିକୁ ଲୋପ କରିବା ତନ୍ମୋଦେଶ୍ୟ ଅଟେ, ଅ: । କରୁଁ ଅମୃତ ଉତ୍କଳଦେଶୀୟ ଲୋକଙ୍କଠାରେ ଆଦର ସନ୍ତୁତ ଗୃହୀତ ହେଲେ କୃତକୃତ୍ୟ ହେବୁଁ ।

ଶ୍ରୀରଜପ୍ରାସାଦ<br>ତା ୨୮ ବସ ମାର୍ଚ୍ଚ<br>୧୮୮୭ ସବସର } ଶ୍ରୀରାମଚନ୍ଦ୍ରାତ୍ମଜେୟ ଜାଲଟେରମଣ୍ଡପତେଃ<br>ଖାରବେର ହରଚନ୍ଦନୋପାଧିକସ୍ୟ

# ନିର୍ଘଣ୍ଟ ।

# ପରାଶର-ସଂହିତା ।

—॰○॰—

## ପ୍ରଥମ ଅଧ୍ୟାୟ ।

ଶ୍ରୀ ଗଣେଶାୟ ନମଃ ।

ଅଥାତୋ ହିମଶୈଳାଗ୍ରେ ଦେବଦାରୁବନାଳୟେ ।
ବ୍ୟାସମେକାଗ୍ରମାସୀନମପୃଚ୍ଛନ୍ନୃଷୟଃ ପୁରା ॥ ୧ ॥
ମାନୁଷାଣାଂ ହିତଂ ଧର୍ମ୍ମଂ ବର୍ତ୍ତମାନେ କଲୌ ଯୁଗେ ।
ଶୌଚାଚାରଂ ଯଥାବଚ୍ଚ ବଦ ସତ୍ୟବତୀସୁତ ॥୨॥
ତଚ୍ଛ୍ରୁତ୍ୱା ଋଷିବାକ୍ୟଂ ତୁ ସମିଦ୍ଧାଗ୍ନ୍ୟର୍କସନ୍ନିଭଃ ।
ପ୍ରତ୍ୟୁବାଚ ମହାତେଜାଃ ଶ୍ରୁତିସ୍ମୃତିବିଶାରଦଃ ॥୩॥
ନ ଚାହଂ ସର୍ବ୍ବତତ୍ତ୍ୱଜ୍ଞଃ କଥଂ ଧର୍ମ୍ମଂ ବଦାମ୍ୟହଂ ।
ଅସ୍ମତ୍ପିତୈବ ପ୍ରଷ୍ଟବ୍ୟ ଇତି ବ୍ୟାସଃ ସୁତୋଽବଦତ୍ ॥୪॥
ତତସ୍ତେ ଋଷୟଃ ସର୍ବେ ଧର୍ମ୍ମତତ୍ତ୍ୱାର୍ଥକାଙ୍କ୍ଷିଣଃ ।
ଋଷିଂ ବ୍ୟାସଂ ପୁରସ୍କୃତ୍ୟ ଗତା ବଦରିକାଶ୍ରମେ ॥୫॥

---

ପୂର୍ବ୍ବକାଳେ ଏକଦିବସରେ ହିମାଳୟପର୍ବ୍ବତର ଉର୍ଦ୍ଧ୍ୱଭାଗରେ ଦେବଦାରୁବନବିରାଜିତ ଆଶ୍ରମରେ ମହର୍ଷି ବେଦବ୍ୟାସ ଏକାଗ୍ରମନରେ ଆସୀନ ଅଛନ୍ତି ଏମନ୍ତ ସମୟରେ କେତେକ ଋଷି ତାହାଙ୍କୁ ପ୍ରଶ୍ନ କଲେ । ୧ ।

ସତ୍ୟବତୀନନ୍ଦନ ! ବର୍ତ୍ତମାନ୍ କଳିଯୁଗରେ କେଉଁ ଧର୍ମ୍ମ କିପରି ଶୌଚ ଓ କିପରି ଆଚାର ମନୁଷ୍ୟଙ୍କର ହିତକର, ଆପଣ ଆନୁପୂର୍ବ୍ବିକ ବୋଲିବା ହୁଅନ୍ତୁ । ୨ ।

ପ୍ରଜ୍ୱଳିତ ଅଗ୍ନି ଓ ସୂର୍ଯ୍ୟତୁଲ୍ୟ ତେଜଃସମ୍ପନ୍ନ, ଶ୍ରୁତି ଓ ସ୍ମୃତିଶାସ୍ତ୍ରରେ ବିଶାରଦ ମହାତେଜା ବ୍ୟାସ, ଋଷିମାନଙ୍କର ଏହି ବାକ୍ୟ ଶ୍ରବଣ କରି କହିଲେ । ୩ ।

ହେ ଋଷିଗଣ ! ଆମ୍ଭେ ସକଳବିଷୟର ତତ୍ତ୍ୱଜ୍ଞ ନୋହୁଁ, କିପ୍ରକାରେ ଧର୍ମ୍ମ ବୋଲିବୁଁ ଏ ବିଷୟ ଆମ୍ଭର ପିତାଙ୍କୁ ପ୍ରଶ୍ନ କରିବାର କର୍ତ୍ତବ୍ୟ । ଯେତେବେଳେ ପରାଶରପୁତ୍ର ବ୍ୟାସ, ଏହିକଥା ବୋଇଲେ । ୪ ।

ତେତେବେଳେ ଧର୍ମ୍ମତତ୍ତ୍ୱଶ୍ରବଣାଭିଳାଷୀ ମୁନିଗଣ, ମହର୍ଷି ବେଦବ୍ୟାସଙ୍କୁ ଅଗ୍ରସର କରି ବଦରିକାଶ୍ରମକୁ ଗମନ କଲେ । ୫ ।

ନାନାବୃକ୍ଷସମାକୀର୍ଣ୍ଣଂ ଫଳପୁଷ୍ପୋପଶୋଭିତଂ ।
ନଦୀପ୍ରସ୍ରବଣାକୀର୍ଣ୍ଣଂ ପୁଣ୍ୟତୀର୍ଥୈରଲଙ୍କୃତଂ ॥ ୬ ॥
ମୃଗପକ୍ଷିଗଣାଢ୍ୟଂ ଚ ଦେବତାୟତନାବୃତଂ ।
ଯକ୍ଷଗନ୍ଧର୍ବସିଦ୍ଧୈଶ୍ଚ ନୃତ୍ୟଗୀତସମାକୁଳଂ ॥ ୭ ॥
ତସ୍ମିନ୍ନୃଷିସଭାମଧ୍ୟେ ଶକ୍ତିପୁତ୍ରଂ ପରାଶରଂ ।
ସୁଖାସୀନଂ ମହାତ୍ମାନଂ ମୁନିମୁଖ୍ୟଗଣାବୃତଂ ॥ ୮ ॥
କୃତାଞ୍ଜଳିପୁଟୋ ଭୂତ୍ୱା ବ୍ୟାସସ୍ତୁ ଋଷିଭିଃ ସହ ।
ପ୍ରଦକ୍ଷିଣାଭିବାଦୈଶ୍ଚ ସ୍ତୁତିଭିଃ ସମପୂଜୟତ୍ । ୯ ।
ଅଥ ସନ୍ତୁଷ୍ଟମନସା ପରାଶରମହାମୁନିଃ ।
ଆହ ସ୍ୱାଗତଂ ବ୍ରୂହୀତ୍ୟାସୀନୋ ମୁନିପୁଙ୍ଗବଃ । ୧୦ ।
ବ୍ୟାସ ସ୍ୱାଗତଂ ଯେ ଚ ଋଷୟଶ୍ଚ ସମନ୍ତତଃ ।
କୁଶଳଂ କୁଶଳେତ୍ୟୁକ୍ତ୍ୱା ବ୍ୟାସଃ ପୃଚ୍ଛତ୍ୟତଃପରଂ । ୧୧ ।
ଯଦି ଜାନାସି ମେ ଭକ୍ତିଂ ସ୍ନେହାଦ୍ୱା ଭକ୍ତବତ୍ସଳ ।

---

( ସେମାନେ ଆଶ୍ରମରେ ପ୍ରବେଶ କରି ଦେଖିଲେ, ବଦରିକାଶ୍ରମ ଅତିଶୟ ମନୋହର ) । ଏହା ଫଳପୁଷ୍ପରେ ପରିଶୋଭିତ ବୃକ୍ଷଗଣରେ ସମାକୀର୍ଣ୍ଣ, ବିବିଧ ନଦ ନଦୀ, ପ୍ରସ୍ରବଣ ଏବଂ ପବିତ୍ର ତୀର୍ଥସମୂହରେ ଅଲଂକୃତ । ୬ ।

ସକଳ ସ୍ଥଳରେ ମୃଗ ଏବଂ ପକ୍ଷିଗଣରେ ପରିବ୍ୟାପ୍ତ; ସ୍ଥାନ ସ୍ଥାନରେ ଦେବମନ୍ଦିରଶ୍ରେଣୀ ରହିଅଛି । ଏହାର ଚତୁର୍ଦିଗ ନୃତ୍ୟଗୀତାନୁରକ୍ତ ଯକ୍ଷ, ଗନ୍ଧର୍ବ ଓ ସିଦ୍ଧଗଣରେ ପରିବୃତ । ୭ ।

( ସେହି ଆଶ୍ରମରେ ) ମହାତ୍ମା, ଶକ୍ତିପୁତ୍ର ପରାଶର, ପ୍ରଧାନ ପ୍ରଧାନ ଋଷିଗଣରେ ପରିବୃତ ହୋଇ ଋଷିସଭାରେ ସୁଖାସୀନ ଅଛନ୍ତି ଏମନ୍ତ ସମୟରେ ବ୍ୟାସ, ମୁନିଗଣଙ୍କ ସହିତ ଉପସ୍ଥିତ ହୋଇ କୃତାଞ୍ଜଳିପୁଟରେ ତାହାଙ୍କୁ ପ୍ରଦକ୍ଷିଣ, ପ୍ରଣାମ ଓ ବହୁବିଧ ସ୍ତବଦ୍ୱାରା ପୂଜା କଲେ । ୮।୯ ।

ଅନନ୍ତର ସୁଖାସୀନ ମହର୍ଷି ପରାଶର, ପ୍ରସନ୍ନମନରେ ସେମାନଙ୍କୁ ସ୍ୱାଗତ ପ୍ରଶ୍ନ କଲେ । ୧୦ ।

ବ୍ୟାସ ଓ ଋଷିଗଣ କହିଲେ କୁଶଳ ! ଆମ୍ଭମାନଙ୍କର ସକଳ କୁଶଳ । ଅନନ୍ତର ବେଦବ୍ୟାସ ପ୍ରଶ୍ନ କଲେ । ୧୧ ।

ପିତଃ ! ଯେବେ ଆପଣଙ୍କ ପ୍ରତି ଆମ୍ଭର କପଟ ଭକ୍ତି, ତାହା ଅବଗତ

ଧର୍ମଂ କଥୟ ମେ ତାତ ଅନୁଗ୍ରାହ୍ୟୋ ହ୍ୟହଂ ତବ ॥ ୧୨ ॥
ଶ୍ରୁତା ମେ ମାନବା ଧର୍ମା ବାଶିଷ୍ଠାଃ କାଶ୍ୟପାସ୍ତଥା ।
ଗାର୍ଗେୟା ଗୌତମାଶ୍ଚୈବ ତଥା ଚୌଶନସାଃ ସ୍ମୃତାଃ ॥ ୧୩ ॥
ଅତ୍ରେର୍ବିଷ୍ଣୋଶ୍ଚ ସାଂବର୍ତ୍ତା ଦାକ୍ଷା ଅଙ୍ଗିରସାସ୍ତଥା ।
ଶାତାତପାଶ୍ଚ ହାରୀତା ଯାଜ୍ଞବଲ୍କ୍ୟକୃତାଶ୍ଚ ଯେ ॥ ୧୪ ॥
କାତ୍ୟାୟନକୃତା ଶ୍ଚୈବପ୍ରାଚେତସକୃତାଶ୍ଚ ଯେ ।
ଆପସ୍ତମ୍ବକୃତା ଧର୍ମାଃ ଶଂଖସ୍ୟ ଲିଖିତସ୍ୟ ଚ ॥ ୧୫ ॥
ଶ୍ରୁତା ହ୍ୟେତେ ଭବତ୍ପ୍ରୋକ୍ତାଃ ଶ୍ରୌତାର୍ଥାସ୍ତେନ ବିସ୍ମୃତାଃ ।
ଅସ୍ମିନ୍ ମନ୍ୱନ୍ତରେ ଧର୍ମାଃ କୃତତ୍ରେତାଦିକେ ଯୁଗେ ॥ ୧୬ ॥
ସର୍ବେ ଧର୍ମାଃ କୃତେ ଜାତା ସର୍ବେ ନଷ୍ଟାଃ କଲୌ ଯୁଗେ ।
ଚାତୁର୍ବର୍ଣ୍ୟସମାଚାରଂ କିଞ୍ଚିତ୍ ସାଧାରଣଂ ବଦ ॥ ୧୭ ॥
ବ୍ୟାସବାକ୍ୟାବସାନେ ତୁ ମୁନିମୁଖ୍ୟଃ ପରାଶରଃ ।
ଧର୍ମସ୍ୟ ନିର୍ଣ୍ଣୟଂ ପ୍ରାହ ସୂକ୍ଷ୍ମଂ ସ୍ଥୂଳଂ ଚ ବିସ୍ତରାତ୍ ॥ ୧୮ ॥

---

ଥାନ୍ତି, ଅଥବା ଅମୃତ ଆପଣଙ୍କର ସ୍ନେହ ଥାଏ, ତାହା ହେଲେ ଏହି ଅନୁଗୃହୀତ ବ୍ୟକ୍ତିଙ୍କୁ ଧର୍ମୋପଦେଶ ପ୍ରଦାନ କରିବା ହୁଅନ୍ତୁ । ୧୨ ।

ଅମ୍ଭେ ଆପଣଙ୍କ ନିକଟରୁ ମନୁ, ବଶିଷ୍ଠ, କଶ୍ୟପ, ଗର୍ଗ, ଗୌତମ, ଉଶନାଃ । ୧୩ ।

ଅତ୍ରି, ବିଷ୍ଣୁ, ସମ୍ବର୍ତ୍ତ, ଦକ୍ଷ, ଅଙ୍ଗିରାଃ ଶାତାତପ, ହାରୀତ, ଯାଜ୍ଞବଲ୍କ୍ୟ । ୧୪ ।

କାତ୍ୟାୟନ, ପ୍ରଚେତସ, ଆପସ୍ତମ୍ବ, ଶଙ୍ଖ ଲିଖିତ, ( ପ୍ରଭୃତି ଋଷି-ନିରୂପିତ – ସତ୍ୟ, ତ୍ରେତା ଓ ଦ୍ୱାପରଯୁଗର ଧର୍ମ ଶ୍ରବଣ କରିଅଛୁଁ )। ୧୫ ।

ଭବତ୍ପ୍ରୋକ୍ତ ଏହି ସମୁଦାୟ ବୈଦିକଧର୍ମ ଯେପରି ଶ୍ରବଣ କରିଅଛୁଁ, ସେପରି ବିସ୍ମୃତ ହୋଇ ନାହୁଁ । ପୂର୍ବୋକ୍ତ ଧର୍ମସକଳ ବର୍ତ୍ତମାନ୍ ମନ୍ୱନ୍ତରରେ ସତ୍ୟ, ତ୍ରେତା ଓ ଦ୍ୱାପରଯୁଗ ନିମିତ୍ତ ନିର୍ଦ୍ଦିଷ୍ଟ । ୧୬ ।

ଏହି ସକଳଧର୍ମ ସତ୍ୟଯୁଗରେ ବ୍ୟବସ୍ଥାପିତ ହୋଇଥିଲା କଳିଯୁଗରେ ସେ ସମୁଦାୟ ଧର୍ମଭ୍ରଷ୍ଟ ହୋଇଅଛି । ଅତଏବ (ଏହି କଳିଯୁଗରେ) ଚାତୁର୍ବର୍ଣ୍ଣର ସାଧାରଣଧର୍ମ କିଛି ବୋଲିବା ହୁଅନ୍ତୁ । ୧୭ ।

ବ୍ୟାସଙ୍କ ବାକ୍ୟ ସମାପ୍ତ ହୁଅନ୍ତେ, ମହର୍ଷି ପରାଶର, ଧର୍ମର ସ୍ଥୂଳ ଓ ସୂକ୍ଷ୍ମ ନିର୍ଣ୍ଣୟ ବିସ୍ତାରିତରୂପେ ବୋଲିବାକୁ ଆରମ୍ଭ କଲେ । ୧୮ ।

ଶୃଣୁ ସୁତ ପ୍ରବକ୍ଷେ ହଂ ଶୃଣ୍ୱନ୍ତୁ ଋଷୟ ସ୍ତଥା ।
କଲ୍ପେ କଲ୍ପେ କ୍ଷୟୋତ୍ପତ୍ତ୍ୟୌ ବ୍ରହ୍ମବିଷ୍ଣୁମହେଶ୍ୱରାଃ ।
ଶ୍ରୁତିଃ ସ୍ମୃତିଃ ସଦାଚାର ନିର୍ଣ୍ଣେତବ୍ୟାଶ୍ଚ ସର୍ବଦା ॥ ୧୯॥
ନ କଶ୍ଚିଦ୍ବେଦକର୍ତ୍ତା ଚ ବେଦସ୍ମର୍ତ୍ତା ଚତୁର୍ମୁଖଃ ॥ ॥
ତଥୈବ ଧର୍ମଂ ସ୍ମରତି ମନୁଃ କଳ୍ପାନ୍ତରାନ୍ତରେ ॥ ୨୦ ॥
ଅନ୍ୟେ କୃତଯୁଗେ ଧର୍ମା ସ୍ତ୍ରେତାୟାଂ ଦ୍ୱାପରେ ପରେ ।
ଅନ୍ୟେ କଳିଯୁଗେ ନୃଣାଂ ଯୁଗରୂପାନୁସାରତଃ ॥ ୨୧ ॥
ତପଃ ପରଂ କୃତଯୁଗେ ତ୍ରେତାୟାଂ ଜ୍ଞାନ ମୁଚ୍ୟତେ ।
ଦ୍ୱାପରେ ଯଜ୍ଞ ମିତ୍ୟୁଚୁର୍ଦାନମେକଂ କଳୌଯୁଗେ ॥ ୨୨ ॥
କୃତେ ତୁ ମାନବୋଧର୍ମସ୍ତ୍ରେତାୟାଂ ଗୌତମଃ ସ୍ମୃତଃ ।
ଦ୍ୱାପରେ ଶଙ୍ଖଲିଖିତଃ କଳୌ ପାରାଶରଃ ସ୍ମୃତଃ ॥ ୨୩ ॥

---

ହେ ସୁତ ! ହେ ଋଷିଗଣ ! (ଧର୍ମତତ୍ତ୍ୱ) କହୁଅଛି ଶ୍ରବଣ କରନ୍ତୁ, ପ୍ରତ୍ୟେକକଳ୍ପେ ପ୍ରଳୟାବସାନେ ଯେତେବେଳେ ନୂତନ ସୃଷ୍ଟି ହୁଏ, ସେତେବେଳେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଓ ଶ୍ରୁତି, ସ୍ମୃତି, ସଦାଚାର, ଏହି ସମୁଦାୟ ନିର୍ଣ୍ଣୀତ ହୋଇଥାଏ । ୧୯ ।

କଳ୍ପାନ୍ତର ହେଲେ ଅପରକଳ୍ପରେ ବେଦକର୍ତ୍ତା ବୋଲି କେହି ନିର୍ଦ୍ଦିଷ୍ଟ ନୁହନ୍ତି; ପରନ୍ତୁ ବ୍ରହ୍ମା କେବଳ ବେଦର ସ୍ମରଣକର୍ତ୍ତା, ଏହିରୂପ ମନୁ କଳ୍ପରେ ଧର୍ମର ସ୍ମରଣକାରୀ ହୁଅନ୍ତି, ଅର୍ଥାତ୍ କଳ୍ପାରମ୍ଭରେ ଚତୁର୍ମୁଖରୁ ବେଦ ଏବଂ ମନୁରୁ ଧର୍ମଶାସ୍ତ୍ର ପ୍ରବୃତ୍ତ ହୁଏ । ଯୁଗଭେଦାନୁସାରେ ଧର୍ମର ମଧ ଭେଦ ହୋଇଥାଏ । ୨୦ ।

ସତ୍ୟଯୁଗରେ ଏକପ୍ରକାର ଧର୍ମ ପ୍ରଚଳିତ; ତ୍ରେତାରେ ଅନ୍ୟପ୍ରକାର, ଦ୍ୱାପରେ ଅନ୍ୟ ଏକପ୍ରକାର ଏବଂ କଳିଯୁଗରେ ଅନ୍ୟବିଧଧର୍ମ ନିର୍ଦ୍ଦିଷ୍ଟ ହୋଇଥାଏ । ୨୧ ।

ସତ୍ୟଯୁଗରେ ତପସ୍ୟାହିଁ ପ୍ରଧାନଧର୍ମ, ତ୍ରେତାରେ ଜ୍ଞାନ, ଦ୍ୱାପରେ ଯଜ୍ଞ, କଳିଯୁଗରେ ଏକମାତ୍ର ଦାନ ମଧ ଧର୍ମ ବୋଲି ନିର୍ଦ୍ଦିଷ୍ଟ ଅଛି । ୨୨ ।

ମନୁନିରୂପିତ ଧର୍ମ ସତ୍ୟଯୁଗର ଧର୍ମ, ଗୌତମନିରୂପିତ ଧର୍ମ ତ୍ରେତାଯୁଗର ଧର୍ମ, ଶଙ୍ଖଲିଖିତ ନିରୂପିତ ଧର୍ମ ଦ୍ୱାପରଯୁଗର ଧର୍ମ, ପରାଶରନିରୂପିତ ଧର୍ମ କଳିଯୁଗର ଧର୍ମ ବୋଲି ନିର୍ଦ୍ଦିଷ୍ଟଅଛି । ୨୩ ।

ତ୍ୟଜେଦ୍ଦେଶଂ କୃତଯୁଗେ ତ୍ରେତାୟାଂ ଗ୍ରାମମୁତ୍ସୃଜେତ୍ ।
ଦ୍ୱାପରେ କୁଳମେକନ୍ତୁ କର୍ତ୍ତାରଂ ଚ କଲୌ ଯୁଗେ ॥ ୨୪ ॥
କୃତେ ସମ୍ଭାଷଣାତ୍ ପାପଂ ତ୍ରେତାୟାଂ ଚୈବ ଦର୍ଶନାତ୍ ।
ଦ୍ୱାପରେ ଚାନ୍ନମାଦାୟ କଲୌ ପତତି କର୍ମ୍ମଣା ॥ ୨୫ ॥
କୃତେ ତୁ ତତ୍କ୍ଷଣାଚ୍ଛାପସ୍ତ୍ରେତାୟାଂ ଦଶଭିର୍ଦ୍ଦିନୈଃ ।
ଦ୍ୱାପରେ ମାସମାତ୍ରେଣ କଲୌ ସମ୍ବତ୍ସରେଣ ତୁ ॥ ୨୬ ॥
ଅଭିଗମ୍ୟ କୃତେ ଦାନଂ ତ୍ରେତାସ୍ୱାହୂୟ ଦୀୟତେ ।
ଦ୍ୱାପରେ ଯାଚମାନାୟ ସେବୟା ଦୀୟତେ କଲୌ ॥ ୨୭ ॥
ଅଭିଗମ୍ୟୋତ୍ତମଂ ଦାନମାହୂତଂ ଚୈବ ମଧ୍ୟମଂ ।
ଅଧମଂ ଯାଚ୍ୟମାନଂ ସ୍ୟାତ୍ ସେବାଦାନଂ ଚ ନିଷ୍ଫଳଂ ॥ ୨୮ ॥
କୃତେ ତ୍ୱସ୍ଥିଗତାଃ ପ୍ରାଣାସ୍ତ୍ରେତାୟାଂ ମାଂସସଂସ୍ଥିତାଃ ।
ଦ୍ୱାପରେ ରୁଧିରଂ ଯାବତ୍ କଲା-ବନ୍ନାଦଷୁ ସ୍ଥିତାଃ ॥ ୨୯ ॥

---

ସତ୍ୟଯୁଗରେ ପାତକର ସଂସ୍ରବ ପରିହାରାର୍ଥ ଦେଶତ୍ୟାଗ ଏବଂ ତ୍ରେତାରେ ଗ୍ରାମତ୍ୟାଗ, ଦ୍ୱାପରରେ କୁଳତ୍ୟାଗ, କଳିଯୁଗରେ କେବଳ ପାତକୀକୁ ପରିତ୍ୟାଗ କରିବ । ୨୪ ।

ସତ୍ୟଯୁଗରେ ପାପିସହିତ ଆଲାପଦ୍ୱାରା ପାପରେ ପତିତ ହୁଅନ୍ତି, ତ୍ରେତାରେ ଦର୍ଶନଦ୍ୱାରା ଦ୍ୱାପରରେ ଅନ୍ନଗ୍ରହଣଦ୍ୱାରା, କଳିରେ କର୍ମ୍ମଦ୍ୱାରା ପତିତ ହୁଅନ୍ତି । ୨୫ ।

ସତ୍ୟଯୁଗରେ ଶାପ ପ୍ରଦାନ କଲେ ତତ୍କ୍ଷଣାତ୍ ଫଳ ହୁଏ; ତ୍ରେତାରେ ଦଶଦିନରେ, ଦ୍ୱାପରେ ଏକମାସରେ, କଳିରେ ଏକବର୍ଷରେ ଫଳ ହୋଇଥାଏ । ୨୬ ।

ସତ୍ୟଯୁଗରେ ଗ୍ରହୀତାର ନିକଟକୁ ଗମନକରି ଦାନ କରନ୍ତି, ତ୍ରେତାରେ ଗ୍ରହୀତାକୁ ଆହ୍ୱାନପୂର୍ବକ ଦାନ କରିଥାନ୍ତି, ଦ୍ୱାପରରେ ପ୍ରାର୍ଥୀ ହେଲେ ଦାନ କରନ୍ତି, କଳିରେ ସେବାକଲେ ଦାନ କରିଥାନ୍ତି । ୨୭ ।

ଗ୍ରହୀତା ନିକଟକୁ ଗମନପୂର୍ବକ ଯେ ଦାନ କରିବାର ହୁଏ, ତାହା ଉତ୍ତମ; ଗ୍ରହୀତାକୁ ଆହ୍ୱାନକରି ଯେ ଦାନ କରିବାର ହୁଏ, ତାହା ମଧ୍ୟମ; ଯାଚିତ ହୋଇ ଯେ ଦାନ କରିବାର ହୁଏ ତାହା ଅଧମ; ସେବା କଲେ ଯେ ଦାନ କରିବାରହୁଏ, ତାହା ନିଷ୍ଫଳ । ୨୮ ।

ସତ୍ୟଯୁଗରେ ମନୁଷ୍ୟର ଅସ୍ଥିଗତ ପ୍ରାଣ; ତ୍ରେତାରେ ମାଂସଗତ ପ୍ରାଣ ; ଦ୍ୱାପରରେ ଶୋଣିତଗତ ପ୍ରାଣ ; କଳିରେ ଅନ୍ନାଦିଗତ ପ୍ରାଣ ।୨୯।

ଧର୍ମୋ ଜିତୋ ହ୍ୟଧର୍ମେଣ ଜିତଃ ସତ୍ୟୋ ହ୍ୟନୃତେନ ଚ ।
ଜିତା ଚୌରୈସ୍ତୁ ରାଜାନଃ ସ୍ତ୍ରୀଭିଶ୍ଚ ପୁରୁଷା ଜିତାଃ ॥ ୩୦ ॥
ସୀଦନ୍ତି ଚାଗ୍ନିହୋତ୍ରାଣି ଗୁରୁପୂଜା ପ୍ରଣଶ୍ୟତି ।
କୁମାର୍ଯ୍ୟଶ୍ଚ ପ୍ରସୂୟନ୍ତେ ତସ୍ମିନ୍ କଲିଯୁଗେ ସଦା ॥ ୩୧ ॥
ଯୁଗେ ଯୁଗେ ଚ ଯେ ଧର୍ମାସ୍ତତ୍ର ତତ୍ର ଚ ଯେ ଦ୍ୱିଜାଃ ।
ତେଷାଂ ନିନ୍ଦା ନ କର୍ତ୍ତବ୍ୟା ଯୁଗରୂପା ହି ତେ ଦ୍ୱିଜାଃ ॥ ୩୨ ॥
ଯୁଗେ ଯୁଗେ ଚ ସାମର୍ଥ୍ୟଂ ଶେଷଂ ମୁନିବିଭାଷିତଂ ।
ପରାଶରେଣ ଚାପ୍ୟୁକ୍ତଂ ପ୍ରାୟଶ୍ଚିତ୍ତଂ ପ୍ରଦୀୟତେ ॥ ୩୩ ॥
ଅହମଦ୍ୟୈବ ତତ୍ସର୍ବମନୁସ୍ମୃତ୍ୟ ବ୍ରବୀମି ବଃ ।
ଚାତୁର୍ବର୍ଣ୍ଣ୍ୟ-ସମାଚାରଂ ଶୃଣୁଧ୍ୱଂ ମୁନିପୁଙ୍ଗବାଃ ॥ ୩୪ ॥
ପାରାଶରମତଂ ପୁଣ୍ୟଂ ପବିତ୍ରଂ ପାପନାଶନଂ ।
ଚିନ୍ତିତଂ ବ୍ରାହ୍ମଣାର୍ଥାୟ ଧର୍ମସଂସ୍ଥାପନାୟ ଚ ॥ ୩୫ ॥

---

କଲିଯୁଗରେ ଧର୍ମ ଅଧର୍ମକର୍ତ୍ତୃକ, ସତ୍ୟ ମିଥ୍ୟାକର୍ତ୍ତୃକ, ନୃପଗଣ ତସ୍କରସମସ୍ତଙ୍କ କର୍ତ୍ତୃକ ଓ ପୁରୁଷସକଳ ନାରୀଗଣକର୍ତ୍ତୃକ ପରାଜିତହୁଅନ୍ତି ।୩୦

ସେହି କଲିଯୁଗରେ ଅଗ୍ନିହୋତ୍ର ଅବସନ୍ନ ହୁଏ, ଗୁରୁପୂଜା ରହିତ ହୁଏ, ଏବଂ ନାରୀଗଣ କୁମାରୀଅବସ୍ଥାରେ ପ୍ରାୟ ସନ୍ତାନ ପ୍ରସବ କରନ୍ତି ।୩୧

ଯୁଗଯୁଗରେ ଯେପରି ଧର୍ମ ପ୍ରଚଳିତ, ଏବଂ ଯୁଗ୨ରେ ଦ୍ୱିଜଗଣ ଯେପରି ଆଚାର ବ୍ୟବହାର କରନ୍ତି, ତହିଁରେ ସେମାନଙ୍କର ନିନ୍ଦା କରିବାର କର୍ତ୍ତବ୍ୟ ନୁହେ; କାରଣ ସେମାନେ ଯୁଗରୂପରେ ଅବତୀର୍ଣ୍ଣ ହୋଇଥାନ୍ତି; ଅର୍ଥାତ୍ ସତ୍ୟଯୁଗର ବ୍ରାହ୍ମଣମାନେ ସାକ୍ଷାତ୍ ସତ୍ୟଯୁଗର ଅବତାର, ତ୍ରେତାଯୁଗର ବ୍ରାହ୍ମଣମାନେ ତ୍ରେତାର ଅବତାର, ଦ୍ୱାପରଯୁଗର ବ୍ରାହ୍ମଣମାନେ ଦ୍ୱାପରର ଅବତାର, କଲିଯୁଗର ବ୍ରାହ୍ମଣମାନେ ସାକ୍ଷାତ୍ କଲିର ଅବତାର । ୩୨ ।

ମୁନିଗଣ ଯୁଗଭେଦରେ ସାମର୍ଥ୍ୟଭେଦ ଓ ଅପରାପର ଭେଦସକଳ କହିଅଛନ୍ତି, ପରନ୍ତୁ କଲିଯୁଗରେ ପରାଶରୋକ୍ତ ପ୍ରାୟଶ୍ଚିତ୍ତହିଁ ପ୍ରଧାନ । ୩୩

ମୁନିଗଣ ! ଅମ୍ଭେ ଅଦ୍ୟ ସେହି କଲିଧର୍ମ ସ୍ମରଣକରି ଆପଣଙ୍କ ନିକଟରେ ବୋଲୁଅଛୁଁ । ଆପଣମାନେ କଲିକାଳର ବର୍ଣ୍ଣଚତୁଷ୍ଟୟର ଆଚାର ବ୍ୟବହାର ଶ୍ରବଣ କରନ୍ତୁ । ୩୪ ।

ପରାଶରଙ୍କର ଏହିମତ ପବିତ୍ର ପୁଣ୍ୟଜନକ ଓ ପାପନାଶକ । ବ୍ରାହ୍ମଣମାନଙ୍କନିମିତ୍ତ ଓ ଧର୍ମସଂସ୍ଥାପନନିମିତ୍ତ ଅମ୍ଭେ ଏହା ସ୍ମରଣ କଲୁଁ ।୩୫।

ଚତୁର୍ଣ୍ଣାମପି ବର୍ଣ୍ଣାନାମାଶ୍ରମେ ଧର୍ମ୍ମପାଳକଃ ।
ଆଶ୍ରମଭ୍ରଷ୍ଟଦେହାନାଂ ଭବେଦ୍ଧର୍ମ୍ମଃ ପରାଙ୍ମୁଖଃ ॥ ୩୬ ॥
ଷଟ୍‌କର୍ମ୍ମାଭିରତୋ ନିତ୍ୟଂ ଦେବତାତିଥି-ପୂଜକଃ ।
ହୁତଶେଷଂ ତୁ ଭୁଞ୍ଜାନୋ ବ୍ରାହ୍ମଣୋ ନାବସୀଦତି ॥ ୩୭ ॥
ସନ୍ଧ୍ୟା ସ୍ନାନଂ ଜପୋ ହୋମଃ ସ୍ୱାଧ୍ୟାୟୋ ଦେବତାର୍ଚ୍ଚନଂ ।
ବୈଶ୍ୱଦେବାତିଥେୟଂ ଚ ଷଟ୍‌କର୍ମାଣି ଦିନେ ଦିନେ ॥ ୩୮ ॥
ପ୍ରିୟୋ ବା ଯଦି ବା ଦ୍ୱେଷ୍ୟୋ ମୂର୍ଖଂ ପଣ୍ଡିତ ଏବ ବା ।
ବୈଶ୍ୱଦେବେ ତୁ ସମ୍ପ୍ରାପ୍ତଃ ସୋଽ ତିଥିଃ ସ୍ୱର୍ଗସଂକ୍ରମଃ ॥ ୩୯ ॥
ଦୂରାଧ୍ୱାନଂ ପଥିଶ୍ରାନ୍ତଂ ବୈଶ୍ୱଦେବେ ଉପସ୍ଥିତଂ ।
ଅତିଥିଂ ତଂ ବିଜାନୀୟାନ୍ନାତିଥିଃ ପୂର୍ବମାଗତଃ ॥ ୪୦ ॥
ନ ପୃଚ୍ଛେଦ୍ଗୋତ୍ରାଚରଣଂ ନ ସ୍ୱାଧ୍ୟାୟବ୍ରତାନି ଚ ॥
ହୃଦୟେ କଳ୍ପୟେତ୍ତସ୍ମିନ୍ ସର୍ବଦେବମୟୋ ହି ସଃ ॥ ୪୧ ॥

---

ସ୍ୱୀୟ ଆଶ୍ରମରେହିଁ ବର୍ଣ୍ଣଚତୁଷ୍ଟୟର ଧର୍ମ୍ମ ରକ୍ଷାକରେ । ଯେଉଁମାନେ ଆଶ୍ରମଭ୍ରଷ୍ଟଧର୍ମ୍ମ ସେମାନଙ୍କପ୍ରତି ବିମୁଖ ହୁଏ । ୩୬ ।

ଯେ ବ୍ରାହ୍ମଣ ଷଟ୍‌କର୍ମରେ ନିରତ ଥାଇ ପ୍ରତିଦିନ ଦେବତା ଓ ଅତିଥିର ପୂଜାକରି ହୁତାବଶିଷ୍ଟ ଭକ୍ଷଣକରନ୍ତି, ସେ କେବେହେଲେ ଅବସନ୍ନ ହୁଅନ୍ତି ନାହିଁ । ୩୭ ।

ପ୍ରତିଦିନ ସନ୍ଧ୍ୟା, ସ୍ନାନ ଜପ, ହୋମ, ସ୍ୱାଧ୍ୟାୟ ଦେବତାଙ୍କ ଅର୍ଚ୍ଚନା, ବୈଶ୍ୱଦେବ ଓ ଅତିଥିର ପରିଚର୍ଯ୍ୟା, ଏହି ଷଡ଼୍‌ବିଧ କର୍ମ୍ମର ନାମ ଷଟ୍‌-କର୍ମ୍ମ । ଦ୍ୱିଜଗଣ ପ୍ରତିଦିନ ଏହି ଷଟ୍‌କର୍ମ୍ମର ଆଚରଣ କରିବେ ।୩୮।

ପ୍ରିୟ ହେଉ ବା ଅପ୍ରିୟ ହେଉ ପଣ୍ଡିତ ହେଉ ବା ମୂର୍ଖ ହେଉ, ବୈଶ୍ୱଦେବସମୟରେ ଯେ ଉପସ୍ଥିତ ହୁଅନ୍ତି, ସେ ଅତିଥି, ଏବଂ ତାହାଙ୍କ ସେବାରେ ସ୍ୱର୍ଗପ୍ରାପ୍ତି ହୁଏ । ୩୯ ।

ଦୂରଦେଶରୁ ଆଗତ ଓ ପଥଶ୍ରାନ୍ତ ବୈଶ୍ୱଦେବସମୟରେ ଉପ-ସ୍ଥିତ ହେଲେ ତାହାଙ୍କୁ ଅତିଥି ବୋଲିଯାଏ ଯେ ବୈଶ୍ୱଦେବପୂର୍ବରେ ଆସନ୍ତି ତାହାଙ୍କୁ ଯେ ଅତିଥି ବୋଲିଯାଏ, ଏମନ୍ତ ନୁହେ । ୪୦ ।

ଅତିଥିର ଗୋତ୍ର, ଆଚରଣ, ସ୍ୱାଧ୍ୟାୟ, ବ୍ରତ ଇତ୍ୟାଦି କୌଣସି ବିଷୟ ଜିଜ୍ଞାସା ନ କରି ସେଥିରେ ହୃଦୟ ସମର୍ପଣ କରିବ, କାରଣ ଅତିଥି ସର୍ବଦେବତାସ୍ୱରୂପ । ୪୧ ।

ସୁଖାବସ୍ଥାନ ବକ୍ଷାମି ବଶିଷ୍ଠେ ଗୃହମାଗତେ ।
ମନୋଷ୍ଟକ୍ଷୁ ର୍ମୁଖଂ ବାଚଂ ସୌମ୍ୟଂ ଦଦ୍ୟାଚ୍ଚତୁଷ୍ଟୟଂ ॥ ୪୨॥
ଚକ୍ଷୁର୍ଦଦ୍ୟା ନ୍ମନୋଦଦ୍ୟାଦ୍ବାଚଂ ଦଦ୍ୟାସ୍ସୁଭାଷିତଂ ।
ଉତ୍ଥାୟ ଗୃସନଂଦଦ୍ୟାଦେଷଧର୍ମଃ ସନାତନଃ ॥ ୪୩ ॥
ନୈକଗ୍ରାମୀଣମତିଥିଂ ବିପ୍ରଂ ସାଙ୍ଗମିକଂ ତଥା ।
ଅନିତ୍ୟଂ ହ୍ୟାଗତୋ ଯସ୍ମାତ୍ତସ୍ମାଦତିଥିରୁଚ୍ୟତେ॥ ୪୪ ॥
ଅପୂର୍ବଃ ସୁବ୍ରତୀ ବିପ୍ରଶ୍ଚାପୂର୍ବୋ ବାଽତିଥିସ୍ତଥା ।
ବେଦାଭ୍ୟାସରତୋ ନିତ୍ୟଂ ତ୍ରୟୋଃପୂର୍ବା ଦିନେ ଦିନେ ॥ ୪୫ ॥
ବୈଶ୍ୱଦେବେ ତୁ ସମ୍ପ୍ରାପ୍ତେ ଭିକ୍ଷୁକେ ଗୃହମାଗତେ ।
ଉଦ୍ଧୃତ୍ୟ ବୈଶ୍ୱଦେବାର୍ଥଂ ଭିକ୍ଷାଂ ଦତ୍ୱା ବିସର୍ଜ୍ଜୟେତ୍ ॥ ୪୬ ॥
ଯତି ଚ ବ୍ରହ୍ମଚାରୀ ଚ ପକ୍ୱାନ୍ନସ୍ୱାମିନାବୁଭୌ ।
ତୟୋରନ୍ନମଦତ୍ୱା ଚ ଭୁକ୍ତ୍ୱା ଚାନ୍ଦ୍ରାୟଣଂ ଚରେତ୍ ॥ ୪୭ ॥

---

ଅତିଥି ଗୃହକୁ ଆଇଲେ ତାହାଠାରେ ଭକ୍ତିକରି ଜିତେନ୍ଦ୍ରିୟ ହୋଇ ତାହାଙ୍କୁ ପୂଜା କରିବ ।୪୨।

ଅତିଥିଙ୍କୁ ଦେଖି ଆନନ୍ଦିତ ହୋଇ ଉତ୍ତମଭାଷାରେ ସଂତୋଷ କରି ଉଠି ଆସନ ଦେବ । ୪୩ ।

ସାଙ୍ଗମିକ [ କୁଟୁମ୍ବ ବା କାର୍ଯ୍ୟସାଧନାର୍ଥ ମିଳିତ ] ଏବଂ ଏକଗ୍ରାମ-ନିବାସୀ ବିପ୍ର, ଅତିଥି ହୋଇ ପାରେ ନାହିଁ, ଯେହେତୁ ଯେ ନିତ୍ୟ ଉପସ୍ଥିତ ନ ହୁଅନ୍ତି ତାହାଙ୍କୁ ଅତିଥି ବୋଲାଯାଏ । ୪୪ ।

ଯେ ପୂର୍ବେ କେତେବେଳେ ଆତିଥ୍ୟ ଗ୍ରହଣକରି ନାହାନ୍ତି, ତାଦୃଶ ଅତିଥି, ଏହିରୂପ ବ୍ରତପରାୟଣ ବ୍ରାହ୍ମଣ ଏବଂ ନିୟତବେଦାଭ୍ୟାସରେ ନିରତ ବ୍ରାହ୍ମଣ, ଏମାନେ ତିନିଜଣ ଅପୂର୍ବ ଅତିଥିଶବ୍ଦରେ ଅଭିହିତ ହୋଇଥାନ୍ତି । ୪୫ ।

ବୈଶ୍ୱଦେବବଳିସମୟରେ ଯେବେ କୌଣସି ଭିକ୍ଷୁକ ଗୃହରେ ଉପସ୍ଥିତ ହୁଅନ୍ତି, ତାହା ହେଲେ ବୈଶ୍ୱଦେବବଳିରୁ ଉଦ୍ଧାରପୂର୍ବକ ଭିକ୍ଷା-ଦାନ କରି ତାହାଙ୍କୁ ବିଦାୟ କରିବ । ୪୬ ।

ଯତି ଏବଂ ବ୍ରହ୍ମଚାରୀ, ଏମାନେ ଉଭୟରେ ପକ୍ୱାନ୍ନର ଅଧିକାରୀ ।

ଯତିହସ୍ତେ ଜଲଂ ଦଦ୍ୟାଦ୍ଭୈକ୍ଷ୍ୟଂ ଦଦ୍ୟାତ୍ ପୁନର୍ଜ୍ଜଲଂ ।
ତଦ୍ଭୈକ୍ଷ୍ୟଂ ମେରୁଣା ତୁଲ୍ୟଂ ତଜ୍ଜଲଂ ସାଗରୋପମଂ ॥ ୪୮ ॥
ବୈଶ୍ୱଦେବକୃତାନ୍ ଦୋଷାନ୍ ଶକ୍ତୋ ଭିକ୍ଷୁର୍ବ୍ୟପୋହିତୁଂ ।
ନ ହି ଭିକ୍ଷୁକୃତାନ୍ ଦୋଷାନ୍ ବୈଶ୍ୱଦେବୋ ବ୍ୟପୋହତି ॥ ୪୯ ॥
ଅକୃତ୍ୱା ବୈଶ୍ୱଦେବଂତୁ ଭୁଞ୍ଜତେ ଯେ ଦ୍ୱିଜାତୟଃ ।
ସର୍ବେ ତେ ନିଷ୍ଫଳା ଜ୍ଞେୟାଃ ପତନ୍ତି ନରକେ ଽ ଶୁଚୌ ॥ ୫୦ ॥
ଶିରୋବେଷ୍ଟଂ ତୁ ଯୋ ଭୁଂକ୍ତେ ଯୋ ଭୁଂକ୍ତେ ଦକ୍ଷିଣାମୁଖଃ ।
ବାମପାଦେ କରଂ ନ୍ୟସ୍ୟ ତଦ୍ବୈ ରକ୍ଷାଂସି ଭୁଞ୍ଜତେ ॥ ୫୧ ॥
ଯତଯେ କାଞ୍ଚନଂ ଦତ୍ତ୍ୱା ତାମ୍ବୂଲଂ ବ୍ରହ୍ମଚାରିଣେ ।
ଚୌରେଭ୍ୟୋ ଽ ପ୍ୟଭୟଂ ଦତ୍ତ୍ୱା ଦାତାପି ନରକଂ ବ୍ରଜେତ୍ ॥ ୫୨

---

ଏମାନଙ୍କର ଉଭୟଙ୍କୁ ଅନ୍ନଦାନ ନ କରି ଭୋଜନ କଲେ ଚାନ୍ଦ୍ରାୟଣ କରିବାକୁ ହୁଏ । ୪୭ ।

ଯତିହସ୍ତରେ ଜଳଦାନ ପୂର୍ବକ ଭିକ୍ଷାଦ୍ରବ୍ୟ ଦାନକରି ପୁନର୍ବାର ଜଳ ପ୍ରଦାନ କରିବ । ଏହିରୂପ କଲେ ସେହି ଭିକ୍ଷାଦ୍ରବ୍ୟ ସୁମେରୁସଦୃଶ ଓ ସେହିଜଳ ସାଗରସଦୃଶ ସମଧିକ ହୋଇଉଠେ । ୪୮ ।

ବୈଶ୍ୱଦେବରେ ଯେବେ କୌଣସି ଦୋଷ ହୁଏ, ଭିକ୍ଷୁକ ତାହା ଅପନୟନ କରିପାରନ୍ତି, କିନ୍ତୁ ବୈଶ୍ୱଦେବ ଭିକ୍ଷୁକକୃତ ଦୋଷ ଅପନୟନ କରିବାକୁ ସମର୍ଥ ହୁଅଇ ନାହିଁ । ୪୯ ।

ଯେଉଁ ସମସ୍ତ ବ୍ରାହ୍ମଣ ବୈଶ୍ୱଦେବର ବଳି ନ ଦେଇ ଭୋଜନ କରନ୍ତି, ସେମାନଙ୍କର ସକଳକର୍ମ୍ମ ନିଷ୍ଫଳ ହୁଏ, ଏବଂ ଅନ୍ତେ ସେମାନେ ନରକଗାମୀ ହୁଅନ୍ତି । ୫୦ ।

ଯେ ମସ୍ତକରେ ଉଷ୍ଣୀଷ ଧାରଣକରି ଭୋଜନ କରନ୍ତି, ଯେ ଦକ୍ଷିଣ-ମୁଖ ହୋଇ ଭୋଜନ କରନ୍ତି ବା ଯେ ବାମପାଦରେ ହସ୍ତ ରଖି ଭୋଜନ କରନ୍ତି, ସେମାନଙ୍କର ଅନ୍ନ ରାକ୍ଷସ ଭକ୍ଷଣ କରଥାଏ । ୫୧ ।

ଯେ ସନ୍ନ୍ୟାସିଙ୍କୁ ସୁବର୍ଣ୍ଣଦାନ କରନ୍ତି, ଯେ ବ୍ରହ୍ମଚାରୀଙ୍କୁ ତାମ୍ବୂଲ ଦାନ କରନ୍ତି, ଯେ ଚୋରଙ୍କୁ ଅଭୟ ଦାନ କରନ୍ତି, ସେ ଦାତା ହେଲେ ମଧ୍ୟ ନରକଗାମୀ ହୋଇଥାନ୍ତି । ୫୨ ।

ପାପୋ ବା ଯଦି ଚଣ୍ଡାଲୋ ବିପ୍ରଘ୍ନଃ ପିତୃଘାତକଃ ।
ବୈଶ୍ୱଦେବେ ତୁ ସଂପ୍ରାପ୍ତଃ ସୋ ଽ ତିଥିଃ ସ୍ୱର୍ଗସଙ୍କ୍ରମଃ ॥ ୫୩ ॥
ଅତିଥିର୍ଯସ୍ୟ ଭଗ୍ନାଶୋ ଗୃହାତ୍ ପ୍ରତିନିବର୍ତ୍ତତେ ।
ପିତରସ୍ତସ୍ୟ ନାଶ୍ନନ୍ତି ବର୍ଷବର୍ଷଶତାନି ଚ । ୫୪ ॥
ନ ପ୍ରସଜ୍ୟାତିଥୌ ବିପ୍ରୋ ହ୍ୟତିଥିଂ ବେଦପାରଗଂ ।
ଅଦତ୍ୱାନ୍ନମାତ୍ରଂ ତୁ ଭୁକ୍ତ୍ୱା ଭୁଂକ୍ତେ ତୁ କିଲ୍ୱିଷଂ ॥ ୫୫ ॥
ବ୍ରାହ୍ମଣସ୍ୟ ମୁଖଂ କ୍ଷେତ୍ରଂ ନିରୂଦକମକଣ୍ଟକଂ ।
ବାପୟେତ୍ ସର୍ବବୀଜାନି ସା କୃଷିଃ ସର୍ବକାମିକା ॥ ୫୬ ॥
ସୁକ୍ଷେତ୍ରେ ବାପୟେଦ୍ ବୀଜଂ ସୁପୁତ୍ରେ ଦାପୟେଦ୍ଧନଂ ।
ସୁକ୍ଷେତ୍ରେଚ ସୁପୁତ୍ରେଚ ଯତ୍ କ୍ଷିପ୍ତଂ ନୈବ ନଶ୍ୟତି ॥ ୫୭ ॥
ଅବ୍ରତା ହ୍ୟନଧୀୟାନା ଯତ୍ର ଭୈକ୍ଷ୍ୟଚରା ଦ୍ୱିଜାଃ ।
ତଂ ଗ୍ରାମଂ ଦଣ୍ଡୟେଦ୍ରାଜା ଚୌରଭକ୍ତପ୍ରଦୋ ହି ସଃ । ୫୮ ।

---

ବୈଶ୍ୱଦେବ ବଳିସମୟରେ ଯେ ଅତିଥି ଉପସ୍ଥିତ ହୁଅନ୍ତି, ସେ ପାପାତ୍ମା ଚଣ୍ଡାଳ ବ୍ରହ୍ମହତ୍ୟାକାରୀ ବା ପିତୃଘାତକ ହେଲେହେଁ ସ୍ୱର୍ଗର ଦ୍ୱାରସ୍ୱରୂପ ହୋଇଥାନ୍ତି । ୫୩ ।

ଯାହାଙ୍କ ଗୃହରୁ ଅତିଥି ନିରାଶ ହୋଇ ପ୍ରତିଗମନ କରନ୍ତି, ( ବା ଫେରିଯାନ୍ତି ) ତାହାଙ୍କର ପିତୃଗଣ ସହସ୍ରବର୍ଷ ଅନାହାରରେ ଥାଆନ୍ତି । ୫୪ ।

ଯେଉଁ ବ୍ରାହ୍ମଣ ବେଦବେଦାଙ୍ଗରେ ପାରଦର୍ଶୀ ଅତିଥିକୁ ଅନ୍ନ ନ ଦେଇ ଅତିକ୍ରମ ପୂର୍ବକ ସ୍ୱୟଂ ଭୋଜନ କରନ୍ତି, ସେ ପାପରାଶି ଭକ୍ଷଣ କରିଥାନ୍ତି । ୫୫ ।

ବ୍ରାହ୍ମଣଙ୍କ ମୁଖ, ଜଳବିହୀନ କଣ୍ଟକଶୂନ୍ୟ କ୍ଷେତ୍ରସ୍ୱରୂପ । ତହିଁରେ ସର୍ବପ୍ରକାର ବୀଜ ବପନ କରିବ, ଏବଂ ସେହି କୃଷି ସର୍ବକାମପ୍ରଦାୟିନୀ ହୁଏ । ୫୬ ।

ସୁକ୍ଷେତ୍ରରେ ବୀଜ ବପନ କରିବ ଏବଂ ସୁପୁତ୍ରରେ ଧନଦାନ କରିବ । ସୁକ୍ଷେତ୍ରରେ ଏବଂ ସୁପୁତ୍ରରେ ଯାହା କ୍ଷେପଣ କରାଯାଏ, ତାହା ନଷ୍ଟ ହୁଏ ନାହିଁ । ୫୭ ।

ଯେଉଁ ଗ୍ରାମରେ ଦ୍ୱିଜଗଣ ଅବ୍ରତାଚାରୀ ଓ ଅଧ୍ୟୟନବିହୀନ ହୋଇ ଭିକ୍ଷାଦ୍ୱାରା ଜୀବିକା ନିର୍ବାହ କରନ୍ତି, ରାଜା ସେହି ଗ୍ରାମସ୍ଥ ସମସ୍ତ ଲୋକଙ୍କୁ ଦଣ୍ଡ ପ୍ରଦାନ କରିବେ, କାରଣ ସେମାନେ ଚୋରଙ୍କୁ ଅନ୍ନଦାନପୂର୍ବକ ପାଳନ କରିଥାନ୍ତି । ୫୮ ।

କ୍ଷତ୍ରିୟୋ ହି ପ୍ରଜା ରକ୍ଷନ୍ ଶସ୍ତ୍ରପାଣିଃ ପ୍ରଦଣ୍ଡବତ୍ ।
ନିର୍ଜିତ୍ୟ ପରସୈନ୍ୟାନି କ୍ଷିତିଂ ଧର୍ମେଣ ପାଲୟେତ୍ । ୫୯ ।
ନ ଶ୍ରୀଃ କୁଲକ୍ରମାୟାତା ସ୍ୱରୂପାଲିଖିତାପି ଯା ।
ଖଡ୍ଗେନାକ୍ରମ୍ୟ ଭୁଞ୍ଜୀତ ବୀରଭୋଗ୍ୟା ବସୁନ୍ଧରା । ୬୦ ।
ପୁଷ୍ପଂ ପୁଷ୍ପଂ ବିଚିନୁୟାନ୍ମୂଲଚ୍ଛେଦଂ ନ କାରୟେତ୍ ।
ମାଲାକାର ଇବୋଦ୍ୟାନେ ନ ଯଥାଙ୍ଗାରକାରକଃ । ୬୧ ।
ଲୌହକର୍ମ ତଥା ରତ୍ନଂ ଗବାଂ ଚ ପ୍ରତିପାଳନଂ ।
ବାଣିଜ୍ୟଂ କୃଷିକର୍ମାଣି ବୈଶ୍ୟବୃତ୍ତିରୁଦାହୃତା । ୬୨ ।
ଶୂଦ୍ରାଣାଂ ଦ୍ୱିଜଶୁଶ୍ରୂଷା ପରମୋ ଧର୍ମଃ ପ୍ରକୀର୍ତ୍ତିତଃ ।
ଅନ୍ୟଥା କୁରୁତେ କିଞ୍ଚିତ୍ତଦ୍ଭବେତ୍ତସ୍ୟ ନିଷ୍ଫଲଂ । ୬୩ ।
ଲବଣଂ ମଧୁ ତୈଳଂ ଚ ଦଧି ତକ୍ରଂ ଘୃତଂ ପୟଃ ।
ନ ଦୁଷ୍ୟେଚ୍ଛୂଦ୍ରଜାତୀନାଂ କୁର୍ଯ୍ୟାତ୍ ସର୍ବସ୍ୟ ବିକ୍ରୟଂ । ୬୪ ।

---

କ୍ଷତ୍ରିୟ ଶସ୍ତ୍ରଗ୍ରହଣପୂର୍ବକ ବିପଦରୁ ପ୍ରଜାବର୍ଗଙ୍କୁ ରକ୍ଷା କରି ଏବଂ ପ୍ରଚଣ୍ଡଭାବରେ ଶତ୍ରୁ ସୈନ୍ୟଙ୍କୁ ପରାଜୟ କରି ଧର୍ମାନୁସାରେ ପୃଥିବୀକୁ ପାଳନ କରିବେ । ୫୯ ।

ଲକ୍ଷ୍ମୀ ଦୃଢ଼ରୂପେ ସ୍ଥାପିତା ହେଲେ କଦାପି କୁଳକ୍ରମାନୁସାରିଣୀ ହୁଅନ୍ତି ନାହିଁ । ତାହାଙ୍କୁ ଖଡ୍ଗଦ୍ୱାରା ଆକ୍ରମଣ କରି ଉପଭୋଗ କରିବାକୁ ହୁଏ । କାରଣ ବସୁନ୍ଧରା ବୀରପୁରୁଷରହିଁ ଭୋଗ୍ୟା । ୬୦ ।

ମାଳାକାର ଯେପରି ଉଦ୍ୟାନରୁ ପୁଷ୍ପ ମାତ୍ର ଚୟନ କରେ, ସେପରି ପ୍ରଜାବର୍ଗଙ୍କର ଯହିଁରେ ପୀଡ଼ନ ନ ହୁଏ ଏହିରୂପେ କର ଗ୍ରହଣ କରିବ, ଅଙ୍ଗାରକାରକଙ୍କ ପରି ସମୂଳଚ୍ଛେଦନ କରିବ ନାହିଁ । ୬୧ ।

ଲୌହକର୍ମ, ରତ୍ନବ୍ୟବସାୟ, ଗୋଜାତିର ପ୍ରତିପାଳନ, ବାଣିଜ୍ୟ, କୃଷିକର୍ମ ଏହି ସକଳ ବୈଶ୍ୟଙ୍କର କାର୍ଯ୍ୟ । ୬୨ ।

ଦ୍ୱିଜସେବା ଏକମାତ୍ର ଶୂଦ୍ରଗଣଙ୍କର ପ୍ରଧାନ ଧର୍ମ । ସେମାନେ ତଦ୍‌ବ୍ୟତିରିକ୍ତ ଯାହା କରିବେ, ତାହା ନିଷ୍ଫଳ । ୬୩ ।

ଲବଣ, ମଧୁ, ତୈଳ, ଦଧି, ତକ୍ର, ଘୃତ ଏବଂ ଦୁଗ୍ଧ, ଏହି ସମସ୍ତ ବିକ୍ରୟ କଲେ ଶୂଦ୍ରଙ୍କର ଦୋଷ ହୁଏ ନାହିଁ । ୬୪ ।

ଅବକ୍ରେୟ୍ୟଂ ମଦ୍ୟ-ମାଂସମଭକ୍ଷ୍ୟସ୍ୟ ଚ ଭକ୍ଷଣଂ ।
ଅଗମ୍ୟାଗମନଂ ଚୈବ ଶୂଦ୍ରୋଽପି ନରକଂ ବ୍ରଜେତ୍ । ୬୫ ।
କପିଳା-କ୍ଷୀରପାନେନ ବ୍ରାହ୍ମଣୀଗମନେନ ଚ ।
ବେଦାକ୍ଷରବିଚାରେଣ ଶୂଦ୍ରସ୍ୟ ନରକଂ ଧ୍ରୁବଂ । ୬୬ ।
ଇତି ପାରାଶରେ ଧର୍ମଶାସ୍ତ୍ରେ ପ୍ରଥମୋଽଧ୍ୟାୟଃ ॥

---

ଅଥ ଦ୍ୱିତୀୟୋଽଧ୍ୟାୟଃ ।

ଅତଃ ପରଂ ଗୃହସ୍ଥସ୍ୟ ଧର୍ମାଚାରଂ କଳୌ ଯୁଗେ ।
ଧର୍ମସାଧାରଣଂ ଶକ୍ୟଂ ଚାତୁର୍ବର୍ଣ୍ୟାଶ୍ରମାଗତଂ । ୧ ।
ସଂପ୍ରବକ୍ଷ୍ୟାମ୍ୟହଂ ପୂର୍ବପରାଶର-ବଚୋ ଯଥା ।
ଷଟ୍‌କର୍ମନିରତୋ ବିପ୍ରଃ କୃଷିକର୍ମାଣି କାରୟେତ୍ । ୨ ।
ହଳମଷ୍ଟଗବଂ ଧର୍ମ୍ୟଂ ଷଡ୍‌ଗବଂ ମଧ୍ୟମଂ ସ୍ମୃତଂ ।
ଚତୁର୍ଗବଂ ନୃଶଂସାନାଂ ଦ୍ୱିଗବଂ ବୃଷଘାତିନାଂ । ୩ ।

---

ମଦ୍ୟ ଏବଂ ମାଂସ ବିକ୍ରୟ କରିବାର ଶୂଦ୍ରଙ୍କର ଉଚିତ ନୁହେ, ତାହା କଲେ କିମ୍ବା ଅଭକ୍ଷ୍ୟ ଭକ୍ଷଣ କଲେ ଅଥବା ଅଗମ୍ୟାଗମନ କଲେ ଶୂଦ୍ର ନରକକୁ ଗମନ କରନ୍ତି । ୬୫ ।

କପିଳାଗାଭୀର ଦୁଗ୍ଧପାନ, ବ୍ରାହ୍ମଣୀଗମନ ଏବଂ ବେଦାକ୍ଷରବିଚାରରେ ପ୍ରବୃତ୍ତ ହେଲେ ଶୂଦ୍ର ନିଶ୍ଚୟହିଁ ନରକଗାମୀ ହୁଏ । ୬୬ ।

ପରାଶରକୃତଧର୍ମଶାସ୍ତ୍ରେ କଳଧର୍ମକଥନେ ପ୍ରଥମ-
ଅଧ୍ୟାୟଃ ସମାପ୍ତଃ ।

---

ଅତଃପର କଳିଯୁଗରେ ଆଶ୍ରମଚତୁଷ୍ଟୟାର୍ଥ ନିର୍ଦ୍ଦିଷ୍ଟ ଓ ବର୍ଣ୍ଣ-ଚତୁଷ୍ଟୟାର୍ଥ ନିର୍ଦ୍ଦିଷ୍ଟ ଏବଂ ସାଧାରଣଙ୍କର ଅନାୟାସସାଧ୍ୟ ଗୃହସ୍ଥର ଧର୍ମାଚାର, ପରାଶରମତାନୁସାରେ ବୋଲୁଁ । ୧ ।

କଳିଯୁଗରେ ଷଟ୍‌କର୍ମନିରତ ବ୍ରାହ୍ମଣ କୃଷିକର୍ମ କରିପାରନ୍ତି । ୨ ।

ଅଷ୍ଟବଳଦଦ୍ୱାରା ହଳକର୍ମ କରାହେଲେ ଧର୍ମାନୁଯାୟୀ ହୁଏ । ଛଅଗୋଟି ଗୋରୁଦ୍ୱାରା ମଧ୍ୟମ, ଚାରିଗୋଟିଦ୍ୱାରା ହଳକର୍ମ କରିବାର ହେଲେ ନୃଶଂସର କାର୍ଯ୍ୟ କରିବାର ହୁଏ । ଦୁଇଗୋଟିଦ୍ୱାରା ହଳକର୍ମ କରିବାର ହେଲେ ବୃଷଘାତୀ ହେବାକୁ ହୁଏ । ୩ ।

କ୍ଷୁଧିତଂ ତୃଷିତଂ ଶ୍ରାନ୍ତଂ ବଲବର୍ଦ୍ଦଂ ନ ଯୋଜୟେତ୍ ।
ହୀନାଙ୍ଗଂ ବ୍ୟାଧିତଂ କ୍ଳୀବଂ ବୃଷଂ ବିପ୍ରୋ ନ ବାହୟେତ୍ ॥ ୪ ॥
ସ୍ଥିରାଙ୍ଗଂ ନୀରୁଜଂ ଦୃପ୍ତଂ ବୃଷଭଂ ଷଣ୍ଡବର୍ଜ୍ଜିତଂ ।
ବାହୟେଦ୍ଦିବସସ୍ୟାର୍ଦ୍ଧଂ ପଶ୍ଚାତ୍ ସ୍ନାନଂ ସମାଚରେତ୍ ॥ ୫ ॥
ଜପ୍ୟଂ ଦେବାର୍ଚ୍ଚନଂ ହୋମଂ ସ୍ୱାଧ୍ୟାୟଂ ଚୈବମଭ୍ୟସେତ୍ ।
ଏକ ଦ୍ୱି ତ୍ରି ଚତୁର୍ବ୍ବିପ୍ରାନ୍ ଭୋଜୟେତ୍ ସ୍ନାତକାନ୍ ଦ୍ୱିଜଃ ॥ ୬ ॥
ସ୍ୱୟଂ କୃଷ୍ଟେ ତଥା କ୍ଷେତ୍ରେ ଧାନ୍ୟୈଶ୍ଚ ସ୍ୱୟମର୍ଜ୍ଜିତୈଃ ।
ନିର୍ବ୍ବପେତ୍ ପଞ୍ଚଯଜ୍ଞାଂଶ୍ଚ କ୍ରତୁଦୀକ୍ଷାଂ ଚ କାରୟେତ୍ ॥ ୭ ॥
ତିଲା ରସା ନ ବିକ୍ରେୟା ବିକ୍ରେୟା ଧାନ୍ୟ ତତ୍ସମାଃ ।
ବିପ୍ରସ୍ୟୈବଂବିଧା ବୃତ୍ତିସ୍ତୃଣକାଷ୍ଠାଦି ବିକ୍ରୟଃ ॥ ୮ ॥
ସଂବତ୍ସରେଣ ଯତ୍ ପାପଂ ମତ୍ସ୍ୟଘାତୀ ସମାପ୍ନୁୟାତ୍ ।
ଅୟୋମୁଖେନ କାଷ୍ଠେନ ତଦେକାହେନ ଲାଙ୍ଗଲୀ ॥ ୯ ॥

---

କ୍ଷୁଧିତ, ତୃଷାର୍ତ୍ତ, ପରିଶ୍ରାନ୍ତ, ବଳବର୍ଦ୍ଦକୁ ହଳରେ ଯୋଜନା କରିବାର ଉଚିତ ନୁହେ, ଏବଂ ଦ୍ୱିଜଗଣ, ଅଙ୍ଗହୀନ, ପୀଡ଼ିତ, କ୍ଳୀବ, ବୃଷକୁ କୌଣସି ଭାରବହନରେ ନିଯୁକ୍ତ କରିବେ ନାହିଁ ॥ ୪ ॥

ଷଣ୍ଡଭିନ୍ନ ସ୍ଥିରାଙ୍ଗ, ରୋଗଶୂନ୍ୟ, ଦୃପ୍ତ, ବୃଷଭକୁ ଦିବସର ଅର୍ଦ୍ଧଭାଗମାତ୍ର ହଳରେ ଯୋଜନା କରିବ, ଅନନ୍ତର କୃଷିକାର୍ଯ୍ୟ ସମାଧା ହେଲେ ସ୍ନାନ କରିବ ॥ ୫ ॥

ତତ୍ପରେ ଜପ, ଦେବାର୍ଚ୍ଚନା, ହୋମ, ସ୍ୱାଧ୍ୟାୟ ପାଠ କରିବ । ଏବଂ ଏକ, ଦୁଇ, ତିନି ବା ଚାରିଜଣ ସ୍ନାତକବ୍ରାହ୍ମଣଙ୍କୁ ଭୋଜନ କରାଇବ ॥ ୬ ।

କ୍ଷେତ୍ର ସ୍ୱୟଂ କର୍ଷଣକରି ସ୍ୱୋପାର୍ଜ୍ଜିତ ଧାନ୍ୟଦ୍ୱାରା ପଞ୍ଚଯଜ୍ଞ କରିବ । ଏବଂ କ୍ରତୁଦୀକ୍ଷା କରାଇବ ॥ ୭ ॥

ବ୍ରାହ୍ମଣଗଣ ତିଳ ଓ ରସ କଦାପି ବିକ୍ରୟ କରିବେ ନାହିଁ । ଧାନ୍ୟ ଓ ତତ୍ ସଦୃଶ ଦ୍ରବ୍ୟ ବିକ୍ରୟ କରିବେ । ସେମାନେ ତୃଣ କାଷ୍ଠାଦି ବିକ୍ରୟ କରି ପାରନ୍ତି; ବ୍ରାହ୍ମଣଙ୍କର ଏବମ୍ବିଧ ବୃତ୍ତି ଦୂଷ୍ୟ ନୁହେ ॥ ୮ ॥

ମତ୍ସ୍ୟଘାତୀ ସଂବତ୍ସର ମତ୍ସ୍ୟ ବଧ କରି ଯେ ପାପ ସଞ୍ଚୟ କରେ, ଲାଙ୍ଗଲୀ ଲୌହମୁଖକାଷ୍ଠଦ୍ୱାରା କର୍ଷଣ କରି ଏକ ଦିବସରେ ସେହି ପାତକ ସଞ୍ଚିତ କରିଥାଏ ॥ ୯ ॥

ପାଶକୋ ମତ୍ସ୍ୟଘାତୀଚ ବ୍ୟାଧଃ ଶାକୁନିକସ୍ତଥା ।
ଅଦାତା କର୍ଷକଶ୍ଚୈବ ପଞ୍ଚୈତେ ସମଭାଗିନଃ ॥ ୧୦ ॥
କଣ୍ଡନୀ ପେଷଣୀ ଚୁଲ୍ଲୀ ଉଦକୁମ୍ଭୋ ଽ ଥ ମାର୍ଜ୍ଜନୀ ।
ପଞ୍ଚଶୂନା ଗୃହସ୍ଥସ୍ୟ ଅହନ୍ୟହନି ବର୍ତ୍ତତେ ॥ ୧୧ ॥
ବୃକ୍ଷାନ୍ ଛିତ୍ୱା ମହୀଂ ଭିତ୍ୱା ହତ୍ୱା ତୁ କୃମିକୀଟକାନ୍ ।
କର୍ଷକଃ ଖଲୁ ଯଜ୍ଞେନ ସର୍ବପାପାତ୍ ପ୍ରମୁଚ୍ୟତେ ॥ ୧୨ ॥
ଯୋ ନ ଦଦ୍ୟାଦ୍ଦ୍ୱିଜାତିଭ୍ୟୋ ରାଶିମୂଲମୁପାଗତଃ ।
ସ ଚୌରଃ ସ ଚ ପାପିଷ୍ଠୋ ବ୍ରହ୍ମଘ୍ନଂ ତଂ ବିନିର୍ଦ୍ଦିଶେତ୍ ॥ ୧୩ ॥
ରାଜ୍ଞେ ଦତ୍ୱା ତୁ ଷଡ୍ଭାଗଂ ଦେବାନାଂ ଚୈବ ବିଂଶକଂ ।
ବିପ୍ରାଣାଂ ତ୍ରିଂଶକଂ ଭାଗଂ କୃଷିକର୍ତ୍ତା ନ ଲିପ୍ୟତେ ॥ ୧୪ ॥
କ୍ଷତ୍ରିୟୋ ଽ ପି କୃଷିଂ କୃତ୍ୱା ଦ୍ୱିଜାନ୍ ଦେବାଂଶ୍ଚ ପୂଜୟେତ୍ ।
ବୈଶ୍ୟଃ ଶୂଦ୍ରଃ ସଦା କୁର୍ଯ୍ୟାତ୍ କୃଷିବାଣିଜ୍ୟଶିଳ୍ପକାନ୍ ॥ ୧୫ ॥

---

ପାଶଜୀବୀ, ମତ୍ସ୍ୟଘାତୀ, ବ୍ୟାଧ, ଶାକୁନିକ ଏବଂ ଅଦାତା, କର୍ଷକ, ଏହି ପାଞ୍ଚଜଣ ସମାନପାତକୀ ହୁଅନ୍ତି ॥ ୧୦ ॥

କଣ୍ଡନୀ ( ମୂଷଳ ବା ଉଦୂଖଳ ) ପେଷଣୀ, ( ପେଷଣଯନ୍ତ୍ର, ଶିଳ-ଶିଳପୁଅ ଓ ଚକୀଯନ୍ତ୍ର ) ଚୁଲ୍ଲୀ ( ପାକାର୍ଥ ଅଗ୍ନିସ୍ଥାନ ) ଉଦକୁମ୍ଭ ( ଜଳର କଳଶୀ ) ଏବଂ ମାର୍ଜ୍ଜନୀ, ( ପଛିଁରା ) ଏହି ପଞ୍ଚଶୂନା ଗୃହସ୍ଥର ନିତ୍ୟମିତ ଥାଏ, ଅର୍ଥାତ୍ ଏହାଦ୍ୱାରା ନିତ୍ୟ ପାପ ସଞ୍ଚୟ ହୁଏ ॥ ୧୧ ॥

କୃଷକ ବୃକ୍ଷଚ୍ଛେଦ, ମହୀଭେଦ, ମୃଗ କୀଟାଦି ବଧକରି ଯେ ପାପ ସଞ୍ଚୟ କରେ, ଯଜ୍ଞଦ୍ୱାରା ସେ ସକଳପାପରୁ ମୁକ୍ତ ହୁଏ ॥ ୧୨ ॥

ଶସ୍ୟାଦିରାଶି ନିକଟରେ ଉପସ୍ଥିତ ଥାଇ ଯେ ବ୍ୟକ୍ତି ବ୍ରାହ୍ମଣଗଣଙ୍କୁ ଦାନ ନ କରେ, ସେ ଚୋର ସେ ପାପିଷ୍ଠ, ତାହାକୁ ବ୍ରହ୍ମହନ୍ତା ବୋଲି ନିର୍ଦ୍ଦେଶ କରାଯାଏ ॥ ୧୩॥

କୃଷିକର୍ତ୍ତା, ରାଜାଙ୍କୁ ଷଷ୍ଠାଂଶ, ଦେବତାମାନଙ୍କୁ ଏକବିଂଶାଂଶ ବ୍ରାହ୍ମଣମାନଙ୍କୁ ତ୍ରିଂଶାଂଶ ପ୍ରଦାନ କଲେ ଜୀବହିଂସାଦି ଜନିତ ପାପରେ ଲିପ୍ତ ହୁଅନ୍ତି ନାହିଁ ॥ ୧୪ ॥

କ୍ଷତ୍ରିୟଜାତି ମଧ୍ୟ କୃଷିକାର୍ଯ୍ୟ କରି ଦେବତା ଓ ବ୍ରାହ୍ମଣମାନଙ୍କର ପୂଜା କରିବ, ବୈଶ୍ୟ ଓ ଶୂଦ୍ରଗଣ ସର୍ବଦା କୃଷି ବାଣିଜ୍ୟ ଓ ଶିଳ୍ପକାର୍ଯ୍ୟ-ଦ୍ୱାରା ଜୀବିକା ନିର୍ବାହ କରିବେ ॥ ୧୫ ॥

ସ୍ୱକର୍ମ୍ମ କୁର୍ବତେ ଶୂଦ୍ରା ଦ୍ୱିଜସେବାବିବର୍ଜ୍ଜିତାଃ ।
ଭବନ୍ତ୍ୟଳ୍ପାୟୁଷସ୍ତେ ବୈ ପତନ୍ତି ନରକେଷ୍ୱପି ।
ଚତୁର୍ଣ୍ଣାମପି ବର୍ଣ୍ଣାନାମେଷ ଧର୍ମ୍ମଃ ସନାତନଃ ॥ ୧୬ ॥
ଇତି ପାରାଶରେ ଧର୍ମ୍ମଶାସ୍ତ୍ରେ ଦ୍ୱିତୀୟୋଽଧ୍ୟାୟଃ ।

—○○○—

ଅଥ ତୃତୀୟୋଽଧ୍ୟାୟଃ ।

ଅତଃ ଶୁଦ୍ଧିଂ ପ୍ରବକ୍ଷ୍ୟାମି ଜନନେ ମରଣେ ତଥା ।
ଦିନତ୍ରୟେଣ ଶୁଧ୍ୟନ୍ତି ବ୍ରାହ୍ମଣା ପ୍ରେତସୂତକେ ॥ ୧ ॥
କ୍ଷତ୍ରିୟୋ ଦ୍ୱାଦଶାହେନ ବୈଶ୍ୟଃ ପଞ୍ଚଦଶାହକୈଃ ।
ଶୂଦ୍ରଃ ଶୁଧ୍ୟତି ମାସେନ ପରାଶରବଚୋ ଯଥା ॥ ୨ ॥
ଉପାସନେ ତୁ ବିପ୍ରାଣାମଙ୍ଗଶୁଦ୍ଧିସ୍ତୁ ଜାୟତେ ।
ବ୍ରାହ୍ମଣାନାଂ ପ୍ରସୂତୌ ତୁ ଦେହସ୍ପର୍ଶୋ ବିଧୀୟତେ ॥ ୩ ॥
ଜାତେ ବିପ୍ରୋ ଦଶାହେନ ଦ୍ୱାଦଶାହେନ ଭୂମିପଃ ।
ବୈଶ୍ୟଃପଞ୍ଚଦଶାହେନ ଶୂଦ୍ରୋ ମାସେନ ଶୁଧ୍ୟତି ॥ ୪ ॥

---

ଯେବେ ଶୂଦ୍ରଗଣ ଦ୍ୱିଜଶୁଶ୍ରୂଷାପରାଙ୍ମୁଖ ହୋଇ ଅବୈଧକାର୍ଯ୍ୟରେ ନିଯୁକ୍ତ ହୁଅନ୍ତି, ତାହା ହେଲେ ସେମାନଙ୍କର ପରମାୟୁ ହ୍ରାସ ହୁଏ, ଓ ସେମାନେ ପରିଣାମରେ ନରକଗାମୀ ହୋଇଥାନ୍ତି । ଏହି ଅମ୍ଭେ ତୁମ୍ଭ-ନିକଟରେ ବର୍ଣ୍ଣଚତୁଷ୍ଟୟର ସନାତନଧର୍ମ୍ମ କୀର୍ତ୍ତନ କଲୁଁ । ୧୬ ।

ପରାଶର ସଂହିତା ଦ୍ୱିତୀୟ ଅଧ୍ୟାୟ ସମାପ୍ତ ।

ଅତଃପର ଜନନାଶୌଚ ଓ ମରଣାଶୌଚର ବିବରଣ କୀର୍ତ୍ତନ କରୁଅଛୁଁ । ଯେବେ ସନ୍ତାନ ପ୍ରସୂତ ହୋଇ ଗତାୟୁ ହୁଏ, ତାହା ହେଲେ ବ୍ରାହ୍ମଣମାନଙ୍କର ତ୍ରିରାତ୍ରି ଅଶୌଚ ହୋଇଥାଏ । ୧ ।

ଉକ୍ତସ୍ଥଳେ କ୍ଷତ୍ରିୟଙ୍କର ଦ୍ୱାଦଶ ଦିନ, ବୈଶ୍ୟଙ୍କର ପଞ୍ଚଦଶ ଦିନ, ଶୂଦ୍ରଙ୍କର ଏକମାସ ଅଶୌଚ ହୁଏ । ପରାଶର ଏହିରୂପ ବୋଲନ୍ତି । ୨ ।

ବ୍ରାହ୍ମଣଙ୍କର ପରିଚର୍ଯ୍ୟାବିଷୟରେ ଦେହାଶୁଦ୍ଧି ହୁଏ ନାହିଁ । ଜନ-ନାଶୌଚ ହେଲେ ବ୍ରାହ୍ମଣମାନଙ୍କର ଅଙ୍ଗସ୍ପର୍ଶ କରାଯାଇ ପାରେ । ୩ ।

ସନ୍ତାନ ଉତ୍ପନ୍ନ ହେଲେ ବ୍ରାହ୍ମଣ ଦଶଦିନରେ, କ୍ଷତ୍ରିୟ ଦ୍ୱାଦଶ ଦିନରେ, ବୈଶ୍ୟ ପଞ୍ଚଦଶଦିନରେ, ଏବଂ ଶୂଦ୍ର ଏକମାସରେ ଶୁଦ୍ଧିଲାଭ କରନ୍ତି । ୪ ।

ଏକାହାଚ୍ଛୁଧ୍ୟତେ ବିପ୍ରୋ ଯୋଽଗ୍ନିବେଦସମନ୍ୱିତଃ ।
ତ୍ର୍ୟହଂ କେବଳବେଦସ୍ତୁ ବିହୀନୋ ଦଶଭିର୍ଦ୍ଦିନୈଃ ॥ ୫ ॥
ଜନ୍ମକର୍ମପରିଭ୍ରଷ୍ଟଃ ସନ୍ଧ୍ୟୋପାସନବର୍ଜ୍ଜିତଃ ।
ନାମଧାରକବିପ୍ରସ୍ୟ ଦଶାହଂ ସୂତକଂ ଭବେତ୍ ॥ ୬ ॥

ଏକପିଣ୍ଡାସ୍ତୁ ଦାୟାଦାଃ ପୃଥଗ୍ଦାରନିକେତନାଃ ।
ଜନ୍ମନ୍ୟପି ବିପତ୍ତୌ ଚ ଭବେତ୍ତେଷାଂ ତୁ ସୂତକଂ ॥ ୭ ॥
ତାବତ୍ତତ୍ର ଦଶାହାନି କୁଲସ୍ୟାନ୍ନଂ ନ ଭୁଜ୍ୟତେ ।
ଦାନଂ ପ୍ରତିଗ୍ରହୋ ହୋମଃ ସ୍ୱାଧ୍ୟାୟଶ୍ଚ ନିବର୍ତ୍ତତେ ॥ ୮ ॥

ପ୍ରାପ୍ନୋତି ସୂତକଂ ଗୋତ୍ରେ ଚତୁର୍ଥପୁରୁଷେଣ ତୁ ।
ଦାୟାଦ୍‌ବିଚ୍ଛେଦମାପ୍ନୋତି ପଞ୍ଚମୋ ଚାତ୍ମବଂଶଜଃ ॥ ୯ ॥

---

ସାଗ୍ନି ଓ ବେଦାଧ୍ୟୟନ-ନିରତ ବ୍ରାହ୍ମଣଙ୍କର ଏକଦିନମାତ୍ର ଅଶୌଚ ହୁଏ । ଯେ ବ୍ରାହ୍ମଣ ନିରଗ୍ନି ଓ କେବଳ ମାତ୍ର ବେଦାଧ୍ୟୟନରେ ରତ, ସେ ତିନଦିବସରେ ଶୁଦ୍ଧିଲାଭ କରନ୍ତି । ଯେ ବ୍ରାହ୍ମଣ ଅଗ୍ନି ଓ ବେଦପାଠ-ରହିତ, ତାହାଙ୍କର ସମ୍ପୂର୍ଣ୍ଣ ଦଶ ଦିନ ସୂତକାଶୌଚ ହୁଏ । ୫ ।

ଯେ ବ୍ରାହ୍ମଣ ଜାତକର୍ମ ଓ ନିତ୍ୟ ନୈମିତ୍ତିକ କର୍ମକଳାପରହିତ ଯେ ବ୍ରାହ୍ମଣ ସନ୍ଧ୍ୟୋପାସନାଦି କରନ୍ତି ନାହିଁ, ଯେ କେବଳ ନାମମାତ୍ର ବ୍ରାହ୍ମଣ, ତାହାଙ୍କର ଦଶଦିବସ ସୂତକାଶୌଚ ହୁଏ । ୬ ।

ଯେବେ ସପିଣ୍ଡ ଜ୍ଞାତିଗଣ ଭିନ୍ନ ଭିନ୍ନ ସ୍ଥାନରେ ବାସପୂର୍ବକ ପୃଥକ୍ ପରିବାର ହୁଅନ୍ତି, ତାହା ହେଲେ ଜନ୍ମ ଓ ମରଣରେ ସେମାନଙ୍କର ସମ୍ପୂର୍ଣ୍ଣ ଦଶ ଦିବସ ଅଶୌଚ ହୋଇଥାଏ । ୭ ।

ଏହି ଉଭୟ ଅଶୌଚରେ ସେହି ଦଶ ଦିବସ ସେହି ବଂଶର ଅନ୍ନ-ଭୋଜନ ନିଷିଦ୍ଧ । ଏହି ଅଶୌଚ-ସମୟରେ ଦାନ, ପ୍ରତିଗ୍ରହ, ହୋମ, ବେଦାଧ୍ୟୟନ, ଏହି ସମୁଦାୟହିଁ ରହିତ କରିବାର କର୍ତ୍ତବ୍ୟ । ୮ ।

ତିନିପୁରୁଷ ପର୍ଯ୍ୟନ୍ତ ସୂତକାଶୌଚ ହୋଇଥାଏ, ଚତୁର୍ଥ ପୁରୁଷରେ ଏହାର ବିଚ୍ଛେଦ ହୁଏ । ଆତ୍ମବଂଶୀୟ ହେଲେ ପଞ୍ଚମପୁରୁଷରେ ବିଚ୍ଛେଦ ହୋଇଥାଏ । ୯ ।

ଚତୁର୍ଥେ ଦଶରାତ୍ରଂ ସ୍ୟାତ୍ ଷଣ୍ଣିଶା ପୁଂସି ପଞ୍ଚମେ ।
ଷଷ୍ଠେ ଚତୁରହାଚ୍ଛୁଦ୍ଧିଃ ସପ୍ତମେ ତୁ ଦିନତ୍ରୟଂ ॥ ୧୦ ॥
ପଞ୍ଚଭିଃ ପୁରୁଷୈର୍ଯୁକ୍ତା ଅଶ୍ନାତବ୍ୟାଃ ସଗୋତ୍ରିଣଃ ।
ତତଃ ଷଷ୍ଠପୁରୁଷାଦ୍ୟାସ୍ତୁ ଶ୍ରାଦ୍ଧେ ଭୋଜ୍ୟାଃ ସଗୋତ୍ରିଣଃ ॥ ୧୧ ॥
ଜଳାଗ୍ନି-ମରଣେ ଚୈବ ଦେଶାନ୍ତରମୃତେ ତଥା ।
ବାଲେ ପ୍ରେତେ ଚ ସନ୍ୟାସେ ସଦ୍ୟଃ ଶୌଚଂ ବିଧୀୟତେ ॥ ୧୨ ॥
ଦଶରାତ୍ରେଷ୍ୱତୀତେଷୁ ତ୍ରିରାତ୍ରାଚ୍ଛୁଦ୍ଧିରିଷ୍ୟତେ ।
ତତଃ ସଂବତ୍ସରାଦୂର୍ଦ୍ଧ୍ୱଂ ସଚେଲଂ ସ୍ନାନମାଚରେତ୍ ॥ ୧୩ ॥
ଦେଶାନ୍ତରମୃତଃ କଶ୍ଚିତ୍ ସଗୋତ୍ରଃ ଶ୍ରୂୟତେ ଯଦି ।
ନ ତ୍ରିରାତ୍ରମହୋରାତ୍ରଂ ସଦ୍ୟଃ ସ୍ନାତ୍ୱା ବିଶୁଦ୍ଧ୍ୟତି ॥ ୧୪ ।
ଅର୍ଦ୍ଧିପକ୍ଷାତ୍ ତ୍ରିରାତ୍ରଂ ସ୍ୟାଦାଷଣ୍ମାସାଚ୍ଚ ପକ୍ଷିଣୀ ।
ଅତଃ ସଂବତ୍ସରାଦର୍ବାକ୍ ସଦ୍ୟଃ ଶୌଚଂ ବିଧୀୟତେ ॥ ୧୫ ॥

---

ଚତୁର୍ଥପୁରୁଷରେ ଦଶରାତ୍ରି, ପଞ୍ଚମପୁରୁଷରେ ଛଅରାତ୍ରି ଷଷ୍ଠ-ପୁରୁଷରେ ଚାରି ରାତ୍ରି ଏବଂ ସପ୍ତମପୁରୁଷରେ ତ୍ରିରାତ୍ରି ଅଶୌଚ ହୁଏ ।୧୦ ।

ସଗୋତ୍ର ବ୍ୟକ୍ତି ପାଞ୍ଚପୁରୁଷ ପର୍ଯ୍ୟନ୍ତ ଶ୍ରାଦ୍ଧରେ ଭୋଜନ କରି-ପାରେ ନାହିଁ । ଏଥି ଉତ୍ତାରୁ ଷଷ୍ଠପୁରୁଷରୁ ଶ୍ରାଦ୍ଧରେ ଭୋଜନ କରି-ପାରିବ । ୧୧ ।

ଜଳରେ (ପର୍ବତର ଉଚ୍ଚସ୍ଥାନରୁ ପଡ଼ିବାରେ) ଓ ଅଗ୍ନିରେ ମରଣ ହେଲେ, ଦେଶାନ୍ତରରେ ମଲେ, ବାଳକ ପ୍ରସୂତ ହେବା ପରେ ମଲେ ସଦ୍ୟଶୌଚ ହୁଏ । ୧୨ ।

ଯେବେ ଦଶରାତ୍ରି ଅତୀତରେ ଅର୍ଥାତ୍ ଅଶୌଚାନ୍ତେ ଅଶୌ-ଚର ସମ୍ବାଦ ପ୍ରାପ୍ତ ହେବାକୁ ହୁଏ, ତାହା ହେଲେ ତ୍ରିରାତ୍ରମାତ୍ର ଅଶୌଚ ହୋଇଥାଏ । ଏକବର୍ଷ ପର ଅଶୌଚସମ୍ବାଦ ପ୍ରାପ୍ତ ହେଲେ ସବସ୍ତ୍ର ସ୍ନାନମାତ୍ରକେ ଶୁଦ୍ଧି ଲାଭ ହୁଅଇ । ୧୩ ।

ଯେବେ କୌଣସି ସଗୋତ୍ର ଦେଶାନ୍ତରରେ ମୃତ ହୋଇଥାନ୍ତି, ଶୁଣିବାକୁ ହୁଏ, ତାହା ହେଲେ ତ୍ରିରାତ୍ର ବା ଅହୋରାତ୍ର ଅଶୌଚ ହୁଏ ନାହିଁ, ସ୍ନାନମାତ୍ରରେ ଶୁଦ୍ଧି ଲାଭ ହୋଇଥାଏ । ୧୪ ।

ପରନ୍ତୁ ତ୍ରିପକ୍ଷ ମଧ୍ୟରେ ମୃତ୍ୟୁସମ୍ବାଦ ଶ୍ରବଣ କଲେ ତ୍ରିରାତ୍ର ଅଶୌଚ ହୁଏ, ଷଣ୍ମାସ ମଧ୍ୟରେ ଶ୍ରବଣ କଲେ ପକ୍ଷିଣୀ ଅର୍ଥାତ୍ ସାର୍ଦ୍ଧ ଦିବସ

ଅଜାତଦନ୍ତା ଯେ ବାଲା ଯେ ଚ ଗର୍ଭାଦ୍ବିନିଃସୃତାଃ ।
ନ ତେଷାମଗ୍ନି ସଂସ୍କାରୋ ନାଶୌଚଂ ନୋଦକକ୍ରିୟା ॥ ୧୬ ॥
ଯଦି ଗର୍ଭୋ ବିପଦ୍ୟେତ ସ୍ରବତେ ବାପି ଯୋଷିତାଂ ।
ଯାବନ୍ମାସ ସ୍ଥିତୋ ଗର୍ଭୋ ଦିନଂ ତାବତ୍ତୁ ସ ସୂତକଃ ॥ ୧୭ ॥
ଆଚତୁର୍ଥାଭବେତ୍ତୁ ସ୍ରାବଃ ପାତଃ ପଞ୍ଚମ-ଷଷ୍ଠୟୋଃ ।
ଅତ ଊର୍ଦ୍ଧ୍ୱଂ ପ୍ରସୂତିଃ ସ୍ୟାଦଶାହଂ ସୂତକଂ ଭବେତ୍ ॥ ୧୮ ॥
ପ୍ରସୂତିକାଲେ ସଂପ୍ରାପ୍ତେ ପ୍ରସବେ ଯଦି ଯୋଷିତାଂ ।
ଜୀବାପତ୍ୟେଷୁ ଗୋତ୍ରସ୍ୟ ମୃତେ ମାତୁସ୍ତୁ ସୂତକଂ ॥ ୧୯ ॥
ରାତ୍ରାବେବ ସମୁତ୍ପନ୍ନେ ମୃତେ ରଜସି ସୂତକେ ।
ପୂର୍ବମେବ ଦିନଂ ଗ୍ରାହ୍ୟଂ ଯାବନ୍ନୋଦୟତେ ରବିଃ ॥ ୨୦ ॥

---

ଅଶୌଚ ହୁଏ, ସଂବତ୍ସର ମଧ୍ୟରେ ଶୁଣିଲେ ଏକଦିବସ ଅଶୌଚ ହୋଇଥାଏ, ସଂବତ୍ସର ପରେ ଶ୍ରବଣ କଲେ ସଦ୍ୟଶୌଚ ହୋଇଥାଏ । ୧୫ ।

ବାଳକ ଗର୍ଭରୁ ବିନର୍ଗତ ହୋଇ ମଲେ ଅଥବା ଅଜାତଦନ୍ତ ବାଳକ ମଲେ ସେମାନଙ୍କର ଅଗ୍ନିସଂସ୍କାର ଅଶୌଚ ବା ଉଦକକ୍ରିୟା ନାହିଁ । ୧୬ ।

ଯେବେ ବାଳକ ଗର୍ଭରେ ଗତାୟୁ ହୁଏ, ଅଥବା ଯେବେ ଗର୍ଭସ୍ରାବ ହୁଏ, ତାହା ହେଲେ ସ୍ତ୍ରୀଲୋକର ଯେତେ ମାସ ଗର୍ଭ, ହୋଇଥାଏ ସେତେଦିନ ସୂତକାଶୌଚ ହୋଇଥାଏ । ୧୭ ।

୪ର୍ଥ ମାସ ପର୍ଯ୍ୟନ୍ତ ଗର୍ଭସ୍ରାବ ବୋଲାଯାଏ । ପଞ୍ଚମ ଷଷ୍ଠ ମାସରେ ଗର୍ଭ ନଷ୍ଟ ହେଲେ ଗର୍ଭପାତ ବୋଲାହୋଇଥାଏ । ଷଷ୍ଠମାସ ପର ଗର୍ଭ ନଷ୍ଟ ହେଲେ ପ୍ରସବ ବୋଲାଯାଇ ପାରେ, ପରନ୍ତୁ ପ୍ରସବସ୍ଥଳରେ ସଂପୂର୍ଣ୍ଣ ଦଶଦିବସ ସୂତକ ଅଶୌଚ ହୁଏ । ୧୮ ।

ସ୍ତ୍ରୀଲୋକଙ୍କର ପ୍ରସବକାଳ ଉପସ୍ଥିତ ହେଲେ ଯେବେ ସନ୍ତାନ ପ୍ରସୂତ ହୁଏ, ତାହା ହେଲେ ସେହି ସନ୍ତାନ ଜୀବିତ ଥିଲେ ସମୁଦାୟ ଗୋତ୍ରର ଏବଂ ସେହି ସନ୍ତାନ ମଲେ ଜନନୀର ଜନନାଶୌଚ ହୋଇଥାଏ । ୧୯ ।

ରାତ୍ରିକାଳରେ ଜନ୍ମ ହେଲେ, ମଲେ, ରଜୋଦର୍ଶନ ହେଲେ ଯେପର୍ଯ୍ୟନ୍ତ ସୂର୍ଯ୍ୟୋଦୟ ନ ହୁଏ, ସେପର୍ଯ୍ୟନ୍ତ ପୂର୍ବଦିନ ଗଣନା କରିବାକୁ ହେବ । ୨୦ ।

ଦନ୍ତଜାତେ ଽନୁଜାତେ ଚ କୃତଚୂଡ଼େ ଚ ସଂସ୍ଥିତେ ।
ଅଗ୍ନିସଂସ୍କରଣଂ ତେଷାଂ ତ୍ରିରାତ୍ରଂ ସୂତକଂ ଭବେତ୍ ॥ ୨୧ ॥
ଆଦନ୍ତଜନନାତ୍ ସଦ୍ୟଃ ଆଚୂଡ଼ା ନୈଶିକୀ ସ୍ମୃତା ।
ତ୍ରିରାତ୍ରମାବ୍ରତାଦେଶାଂ ଦଶରାତ୍ରମତଃ ପରଂ ॥ ୨୨ ॥
ଗର୍ଭେ ଯଦି ବିପତ୍ତିଃ ସ୍ୟାଦଶାହଂ ସୂତକଂ ଭବେତ୍ ।
ଜୀବନ୍ ଜାତୋ ଯଦି ପ୍ରେତଃ ସଦ୍ୟ ଏବ ବିଶୁଧ୍ୟତି ॥ ୨୩ ॥
ସ୍ତ୍ରୀଣାଂ ଚୂଡ଼ାନ୍ନ ଆଦାନାତ୍ ସଂକମାତ୍ରଦଧଃ କ୍ରମାତ୍ ।
ସଦ୍ୟଃ ଶୌଚମଥୈକାହଂ ତ୍ରିରହଃ ପିତୃବନ୍ଧୁଷୁ ॥ ୨୪ ॥
ବ୍ରହ୍ମଗୃହ୍ୟା ଗୃହେ ଯେଷାଂ ହୂୟତେ ଚ ହୁତାଶନେ ।
ସମ୍ପର୍କଂ ନତ କୁର୍ବନ୍ତି ନ ତେଷାଂ ସୂତକଂ ଭବେତ୍ ॥ ୨୫ ॥

---

ଦନ୍ତ ଉଠିବା ବା ଚୂଡ଼ାକରଣ ପରେ ଯେବେ ବାଳକର ମୃତ୍ୟୁ ହୁଏ, ତାହା ହେଲେ ତାହାର ଅଗ୍ନିସଂସ୍କାର ହେବ ଏବଂ ସଗୋତ୍ରର ତ୍ରିରାତ୍ର ଅଶୌଚ ହେବ । ୨୧ ।

ଯେତେଦିନ ବାଳକର ଦନ୍ତ ନ ଉଠେ, ତେତେଦିନ ମଧ୍ୟରେ ମଲେ ସଦ୍ୟଃ ଶୌଚ, ଚୂଡ଼ାକରଣ ପର୍ଯ୍ୟନ୍ତ ଏକରାତ୍ରି ଅଶୌଚ, ଉପନୟନପର୍ଯ୍ୟନ୍ତ ତ୍ରିରାତ୍ରି ଅଶୌଚ, ଉପରେ ଦଶରାତ୍ରି ମରଣାଶୌଚ ହୋଇଥାଏ । ୨୨ ।

ବାଳକ ଯେବେ ଗର୍ଭରେ ବିନଷ୍ଟ ହୁଏ, ତାହା ହେଲେ ଦଶଦିନ ସୂତକାଶୌଚ ହୋଇଥାଏ, ପରନ୍ତୁ ଯେବେ ଜୀବିତ ବାଳକ ଜନ୍ମ ଗ୍ରହଣ କରି ପଶ୍ଚାତ୍ ଗତାସୁ ହୁଏ, ତାହା ହେଲେ ସଦ୍ୟଃ ଶୌଚ ହୋଇଥାଏ ।୨୧

କନ୍ୟାସନ୍ତାନ ଜନ୍ମ ହୋଇ ଯେବେ ଚୂଡ଼ାକରଣ ଓ ଅନ୍ନପ୍ରାଶନମଧ୍ୟରେ ତାହାର ମୃତ୍ୟୁ ହୁଏ, ତାହା ହେଲେ ପିତୃବନ୍ଧୁମାନଙ୍କର ସଦ୍ୟଃଶୌଚ । ସମ୍ପ୍ରଦାନ ମଧ୍ୟରେ ମୃତ୍ୟୁ ହେଲେ ଏକଦିବସ ଅଶୌଚ, ଉପରେ ସେମାନଙ୍କର ତ୍ରିରାତ୍ରି ଅଶୌଚ ହୋଇଥାଏ । ୨୪ ।

ଯେଉଁମାନଙ୍କ ଗୃହରେ ବ୍ରହ୍ମଗୃହ୍ୟା ଅବସ୍ଥାନ କରି ଅଗ୍ନିରେ ହୋମ କରନ୍ତି, ଅନ୍ୟ କୌଣସି ସମ୍ପର୍କ ରଖନ୍ତି ନାହିଁ, ସେମାନଙ୍କର ଅଶୌଚ ହୁଏ ନାହିଁ । ୨୫ ।

ସମ୍ପର୍କାଦ୍ଦୂଷ୍ୟତେ ବପ୍ରୋ ନାନ୍ୟୋ ଦୋଷୋ ଽସ୍ତି ବ୍ରାହ୍ମଣେ ।
ସମ୍ପର୍କେଷୁ ନବୃତ୍ତସ୍ୟ ନ ପ୍ରେତଂ ନୈବ ସୂତକଂ ॥ ୨୬ ॥
ଶିଳ୍ପିନଃ କାରୁକା ବୈଦ୍ୟା ଦାସୀ ଦାସାସ୍ତ ନାପିତାଃ ।
ଶ୍ରୋତ୍ରିୟ୍ୟଶ୍ଚୈବ ରଜାନଃ ସଦ୍ୟଃ ଶୌଚାଃ ପ୍ରକୀର୍ତ୍ତିତାଃ ॥ ୨୭ ॥
ସବ୍ରତୀ ମନ୍ତ୍ରପୂତସ୍ତ ଆହିତାଗ୍ନିସ୍ତ ଯୋ ଦ୍ୱିଜଃ ।
ରାଜ୍ଞସ୍ତ ସୂତକଂ ନାସ୍ତି ଯସ୍ୟ ଚେଚ୍ଛତ ପାର୍ଥିବଃ ॥ ୨୮ ॥
ଉଦ୍ୟତୋ ନଧନେ ଦାନେ ଅର୍ତ୍ତେ ବପ୍ରୋ ନମନ୍ତ୍ରିତଃ ।
ତଦେବ ଋଷିଭର୍ଦ୍ଦୃଷ୍ଟଂ ଯଥାକାଲେନ ଶୁଧ୍ୟତ ॥ ୨୯ ॥
ପ୍ରସବେ ଗୃହମେଧୀ ତୁ ନ କୁର୍ଯ୍ୟାତ୍ ସଙ୍କର ଯଦ ।
ଦଶାହାଚ୍ଛୁଧ୍ୟତେ ମାତା ଅବଗାହ୍ୟ ପିତା ଶୁଚିଃ ॥ ୩୦ ॥
ସର୍ବେଷାଂ ଶାବମାଶୌଚଂ ମାତା-ପିତ୍ରୋର୍ଦ୍ଦଶାହକଂ ।
ସୂତକଂ ମାତୁରେବ ସ୍ୟାଦୁପସ୍ପୃଶ୍ୟ ପିତା ଶୁଚିଃ ॥ ୩୧ ॥

---

ବ୍ରାହ୍ମଣ ସମ୍ପର୍କଦ୍ୱାରା ଦୂଷିତ ହୁଏ, ଅନ୍ୟ କୌଣସି କାରଣରୁ ଦୂଷିତ ହୁଏ ନାହିଁ । ସମ୍ପର୍କରହିତ ହେଲେ ତାହାର ଜନନ ମରଣାଶୌଚ ହୁଏ ନାହିଁ । ୨୬ ।

ଶିଳ୍ପକର, କାରୁକର, ବୈଦ୍ୟ, ଦାସୀ, ଦାସ, ନାପିତ, ଶ୍ରୋତ୍ରିୟ ଏବଂ ରଜା, ଏମାନେ ସଦ୍ୟଃ ଶୌଚ ଅର୍ଥାତ୍ ଏମାନଙ୍କର ସ୍ୱୀୟ କାର୍ଯ୍ୟ ନଷ୍ଟ ନୁହେ । ୨୭ ।

ସତୀର୍ଥ, ମନ୍ତ୍ରପୂତ, ଆହିତାଗ୍ନି ବ୍ରାହ୍ମଣ, ରାଜା ଏବଂ ରାଜାଙ୍କର ଅଭିପ୍ରେତ ବ୍ୟକ୍ତିଙ୍କର ସୂତକାଶୌଚ ହୁଏ ନାହିଁ । ୨୮ ।

ବଧୋଦ୍ୟତ, ଦାନୋଦ୍ୟତ ଏବଂ ନମନ୍ତ୍ରିତ ବ୍ୟକ୍ତିମାନଙ୍କ ପ୍ରତି ଆଧ ଋଷିଗଣ ସେହିପରି ବ୍ୟବସ୍ଥା କରିଅଛନ୍ତି । ଏମାନେ ସମସ୍ତେ ଯଥାସମୟରେ କାର୍ଯ୍ୟକାଳରେ ଶୁଦ୍ଧି ଲାଭ କରନ୍ତି । ୨୯ ।

ଗୃହମେଧୀ ବ୍ରାହ୍ମଣ ଯେବେ ପତ୍ନୀର ସୂତକାଗାର-ସଙ୍କରରେ ନ ଥାନ୍ତି, ତାହା ହେଲେ ସେ ସ୍ନାନ କରି ଶୁଚି ହୁଅନ୍ତି । ୩୦ ।

ମାତା ପିତା ସମସ୍ତେ ଦଶଦିନ ମରଣାଶୌଚ ପାଳନ୍ତି ; ଏକମାତ୍ର ଜନନୀର ସୂତକାଶୌଚ ହୁଏ, ପିତା ସ୍ନାନମାତ୍ରେ ଶୁଦ୍ଧିଲାଭ କରନ୍ତି । ୩୧ ।

ଯଦି ପତ୍ନ୍ୟାଂ ପ୍ରସୂତାୟାଂ ସମ୍ପର୍କଂ କୁରୁତେ ଦ୍ୱିଜଃ ।
ସୂତକଂ ତୁ ଭବେତ୍ତସ୍ୟ ଯଦି ବିପ୍ରଃ ଷଡଙ୍ଗବିତ୍ ॥ ୩୨ ॥
ସମ୍ପର୍କାଜ୍ଜାୟତେ ଦୋଷୋ ନାନ୍ୟୋ ଦୋଷୋଽସ୍ତି ବ୍ରାହ୍ମଣେ ।
ତସ୍ମାତ୍ ସର୍ବପ୍ରଯତ୍ନେନ ସମ୍ପର୍କଂ ବର୍ଜୟେତ୍ ଦ୍ୱିଜଃ ॥ ୩୩ ॥
ବିବାହୋତ୍ସବଯଜ୍ଞେଷୁ ତ୍ୱନ୍ତରା ମୃତସୂତକେ ।
ପୂର୍ବସଙ୍କଳ୍ପିତଂ ଦ୍ରବ୍ୟଂ ଦୀୟମାନଂ ନ ଦୂଷ୍ୟତି ॥ ୩୪ ॥
ଅନ୍ତରା ତୁ ଦଶାହସ୍ୟ ପୁନର୍ମ୍ମରଣଜନ୍ମନି ।
ତାବତ୍ ସ୍ୟାଦଶୁଚିର୍ବିପ୍ରୋ ଯାବତ୍ତତ୍ସ୍ୟାଦନିର୍ଦ୍ଦଶମ୍ ॥ ୩୫ ॥
ବ୍ରାହ୍ମଣାର୍ଥେ ବିପନ୍ନାନାଂ ବନ୍ଦିଗୋଗ୍ରହଣେ ତଥା ।
ଆହବେଷୁ ବିପନ୍ନାନାମେକରାତ୍ରଂ ତୁ ସୂତକଂ ॥ ୩୬ ॥
ଦ୍ୱାବିମୌ ପୁରୁଷୌ ଲୋକେ ସୂର୍ଯ୍ୟମଣ୍ଡଳଭେଦିନୌ ।
ପରିବ୍ରାଡ୍ଯୋଗଯୁକ୍ତଶ୍ଚ ରଣେ ଚାଭିମୁଖେ ହତଃ ॥ ୩୭ ॥

---

ପତ୍ନୀ ପ୍ରସୂତା ହେଲେ ଯେବେ କୌଣସି ବ୍ରାହ୍ମଣ ସୂତିକାଗାର ସହିତ ସଂସ୍ରବ କରନ୍ତି, ତାହା ହେଲେ ସେ ଷଡଙ୍ଗବେଦରେ ପାରଦର୍ଶୀ ହେଲେ-ହେଁ ଅଶୁଚୀ ହୁଅନ୍ତି । ୩୨ ।

ବ୍ରାହ୍ମଣ ସମ୍ପର୍କଦ୍ୱାରା ଦୂଷିତ ହୁଅନ୍ତି । ସମ୍ପର୍କବ୍ୟତିରେକେ ଆଉ କୌଣସି ଦୋଷ ବ୍ରାହ୍ମଣଙ୍କର ଘଟିବାରେ ନାହିଁ ଅତଏବ ବ୍ରାହ୍ମଣଙ୍କର କର୍ତ୍ତବ୍ୟ ଏହି ଯେ ସର୍ବପ୍ରଯତ୍ନରେ ସଂସର୍ଗ ପରିତ୍ୟାଗ କରିବେ । ୩୩ ।

ବିବାହ ଉତ୍ସବ ଯଜ୍ଞପ୍ରଭୃତିରେ ଯେବେ କୌଣସି ଦ୍ରବ୍ୟ ପ୍ରଦାନ କରିବାର ସଙ୍କଳ୍ପ ହୋଇଥାଏ, ଏବଂ ଯେବେ ତହିଁ ମଧ୍ୟରେ ମୃତାଶୌଚ ବା ଜନନାଶୌଚ ହୁଏ, ତାହା ହେଲେ ସେହି ସଙ୍କଳ୍ପିତ ଦ୍ରବ୍ୟ ଦାନ କରି-ପାରନ୍ତି, ତହିଁରେ କୌଣସି ଦୋଷ ହୁଏ ନାହିଁ ॥ ୩୪ ॥

ଯେବେ ଦଶଦିନ ଅଶୌଚ ମଧ୍ୟରେ ପୁନର୍ବାର ଜନନାଶୌଚ ବା ମରଣାଶୌଚ ହୁଏ, ତାହା ହେଲେ ଯେପର୍ଯ୍ୟନ୍ତ ପୂର୍ବ ଅଶୌଚସୀମା ଦଶ-ଦିନ ପୂର୍ଣ୍ଣ ନ ହୁଏ, ସେପର୍ଯ୍ୟନ୍ତ ବ୍ରାହ୍ମଣଙ୍କର ଅଶୌଚ ଥାଏ ॥ ୩୫ ॥

ବ୍ରାହ୍ମଣ-ରକ୍ଷାର୍ଥ ମଲେ, ବନ୍ଦୀକୃତା ଗାଭୀର ଉଦ୍ଧାର ନିମିତ୍ତ ପ୍ରାଣ-ତ୍ୟାଗ କଲେ ଏବଂ ସଂଗ୍ରାମରେ ବିପନ୍ନ ହେଲେ ଏକରାତ୍ରି ଅଶୌଚ ହୁଏ ॥ ୩୬ ॥

ଏହି ଅବନୀମଣ୍ଡଳ ମଧ୍ୟରେ ଯୋଗଯୁକ୍ତ ପରିବ୍ରାଟ୍ ଏବଂ

ଯତ୍ର ଯତ୍ର ହତଃ ଶୂରଃ ଶତ୍ରୁଭିଃ ପରିବେଷ୍ଟିତଃ ।
ଅକ୍ଷୟାନ୍ ଲଭତେ ଲୋକାନ୍ ଯଦି କ୍ଳୀବଂ ନ ଭାଷତେ ॥ ୩୮ ॥
ଜିତେନ ଲଭତେ ଲକ୍ଷ୍ମୀଂ ମୃତେନାପି ସୁରାଙ୍ଗନାଃ ।
କ୍ଷଣବିଧ୍ୱଂସିକେ ଦେହେ କା ଚିନ୍ତା ମରଣେ ରଣେ ॥ ୩୯ ॥
ଯସ୍ତୁ ଭଗ୍ନେଷୁ ସୈନ୍ୟେଷୁ ବିଦ୍ରବତ୍ସୁ ସମନ୍ତତଃ ।
ପରିତ୍ରାତା ଯଦା ଗଚ୍ଛେତ୍ ସ ଚ କ୍ରତୁଫଲଂ ଲଭେତ୍ ॥ ୪୦ ॥
ଯସ୍ୟ ଛେଦକ୍ଷତଂ ଗାତ୍ରଂ ଶରଶକ୍ତ୍ୟଷ୍ଟିମୁଦ୍ଗରୈଃ ।
ଦେବକନ୍ୟାସ୍ତୁ ତଂ ବୀରଂ ଗାୟନ୍ତି ରମୟନ୍ତି ଚ ॥ ୪୧ ॥
ବରାଙ୍ଗନାଃ ସହସ୍ରାଣି ଶୂରମାୟୋଧନେ ହତଂ ।
ନାଗକନ୍ୟାସ୍ତୁ ଧାବନ୍ତି ମମ ଭର୍ତ୍ତା ଭବେଦିତି ॥ ୪୨ ॥

---

ସମ୍ମୁଖଯୁଦ୍ଧରେ ହତବୀର, ଏମାନେ ଉଭୟରେ ସୂର୍ଯ୍ୟମଣ୍ଡଳ ଭେଦ କରି ଊର୍ଦ୍ଧ୍ୱକୁ ଗମନ କରନ୍ତି । ୩୭ ।

ବୀରପୁରୁଷ ଯେବେ ଶତ୍ରୁଗଣ କର୍ତ୍ତୃକ ପରିବେଷ୍ଟିତ ହୋଇ ପ୍ରାଣ ପରିତ୍ୟାଗ କରନ୍ତି, ଏବଂ ଯେବେ ସେ ସମୟରେ କାତରୋକ୍ତି ପ୍ରୟୋଗ ନ କରନ୍ତି, ତାହା ହେଲେ ଅକ୍ଷୟପୁଣ୍ୟଲୋକକୁ ଗମନ କରନ୍ତି । ୩୮ ।

ଶତ୍ରୁକୁ ଜୟ କରିପାରିଲେ ଲକ୍ଷ୍ମୀଲାଭ ହୁଏ, ଶତ୍ରୁ-କର୍ତ୍ତୃକ ନିହତ ହେଲେ ସ୍ୱର୍ଗରେ ସୁରାଙ୍ଗନା ପ୍ରାପ୍ତ ହେବାକୁ ହୁଏ; ଅତଏବ କ୍ଷଣବିଧ୍ୱଂସି ଏହି ଶରୀରଦ୍ୱାରା ସଂଗ୍ରାମ ଓ ମରଣରେ ଚିନ୍ତା କି ? । ୩୯ ।

ଯେଉଁ ସମୟରେ ସୈନ୍ୟସମୂହ ଭଗ୍ନ ହୋଇ ଚତୁର୍ଦ୍ଦିଗରେ ପଳାୟନ କରୁଥାନ୍ତି, ସେ ସମୟରେ ଯେଉଁ ବୀର ସେମାନଙ୍କୁ ସଂଗ୍ରାମଭୂମିରେ ରକ୍ଷା କରନ୍ତି, ସେ ଯଜ୍ଞାନୁଷ୍ଠାନର ଫଳପ୍ରାପ୍ତ ହୁଅନ୍ତି । ୪୦ ।

ସଂଗ୍ରାମରେ ଯାହାଙ୍କ ଶରୀର ଶର ଶକ୍ତି ଯଷ୍ଟି ମୁଦ୍ଗର ପ୍ରଭୃତିଦ୍ୱାରା ଛିନ୍ନ ଭିନ୍ନ ଓ କ୍ଷତ ବିକ୍ଷତ ହୁଏ, ଦେବକନ୍ୟାମାନେ ତାହାଙ୍କଠାରେ ରତ ହୁଅନ୍ତି, ଓ ତାହାଙ୍କର ଯଶୋଗାନ କରିଥାନ୍ତି । ୪୧ ।

ଯେଉଁ ବୀର ସଂଗ୍ରାମଭୂମିରେ ନିହତ ହୁଅନ୍ତି, ତାହାଙ୍କ ଅନୁସରଣାର୍ଥ ସହସ୍ର ୨ ଦେବକନ୍ୟା ଓ ନାଗକନ୍ୟା ଧାବମାନ ହୋଇଥାନ୍ତି ଏବଂ ସମସ୍ତେ ପ୍ରାର୍ଥନା କରନ୍ତି ଯେ ଏ ଆମ୍ଭର ସ୍ୱାମୀ ହୁଅନ୍ତୁ । ୪୨ ।

ଲଲାଟଦେଶାଦ୍ରୁଧିରଂ ହି ଯସ୍ୟ
ତପ୍ତସ୍ୟ ଜନ୍ତୋଃ ପ୍ରବିଶେଚ୍ଚ ବକ୍ତ୍ରେ ।
ତତ୍ସୋମପାନେନ ହି ତସ୍ୟ ତୁଲ୍ୟଂ
ସଂଗ୍ରାମଯଜ୍ଞେ ବିଧିବଚ୍ଚ ଦୃଷ୍ଟଂ ॥ ୪୩ ॥
ଯଂ ଯଜ୍ଞସଙ୍ଘୈ ସ୍ତପସା ଚ ବିଦ୍ୟୟା
ସ୍ୱର୍ଗୈଷିଣୋ ବାତ୍ର ଯଥୈବ ବିପ୍ରାଃ ।
ତଥୈବ ଯାନ୍ତ୍ୟେବ ହି ତତ୍ର ବୀରାଃ
ପ୍ରାଣାନ୍ ସୁଯୁଦ୍ଧେନ ପରିତ୍ୟଜନ୍ତଃ ॥ ୪୪ ॥
ଅନାଥଂ ବ୍ରାହ୍ମଣଂ ପ୍ରେତଂ ଯେ ବହନ୍ତି ଦ୍ୱିଜାତୟଃ ।
ପଦେ ପଦେ ଯଜ୍ଞଫଲମାନୁପୂର୍ବ୍ୟାଲ୍ଲଭନ୍ତି ତେ ॥ ୪୫ ॥
ଅସଗୋତ୍ରମବନ୍ଧୁଂ ଚ ପ୍ରେତୀଭୂତଂ ଚ ବ୍ରାହ୍ମଣଂ ।
ନୀତ୍ୱା ଚ ଦାହୟିତ୍ୱା ଚ ପ୍ରାଣାୟାମେନ ଶୁଦ୍ଧ୍ୟତି ॥ ୪୬ ।
ନ ତେଷାମଶୁଭଂ କିଞ୍ଚିଦ୍ଦ୍ୱିଜାନାଂ ଶୁଭକର୍ମ୍ମଣି ।
ଜଲାବଗାହନାତ୍ତେଷାଂ ଶୁଦ୍ଧିଃ ସ୍ମୃତିରୀରିତା ॥ ୪୭ ॥

---

ଯେଉଁ ବ୍ୟକ୍ତି ଶତ୍ରୁବାଣରେ ପରିତପ୍ତ ହେବ ଏବଂ ଯାହାଙ୍କର ଲଲାଟଦେଶରୁ ଶୋଣିତଧାର ନିଃସୃତ ହୋଇ ମୁଖରେ ପ୍ରବେଶ କରିବ, ସଂଗ୍ରାମଯଜ୍ଞରେ ଯଥାବିଧାନରେ ତାହାଙ୍କର ସୋମଯାଗର ସଦୃଶ ଫଳ ଦୃଷ୍ଟ ହେବ । ୪୩ । ଯେଉଁମାନେ ସ୍ୱର୍ଗପ୍ରାର୍ଥୀ ବ୍ରାହ୍ମଣ, ସେମାନେ ଯଜ୍ଞ-ସମୂହଦ୍ୱାରା ତପସ୍ୟାଦ୍ୱାରା ବିଦ୍ୟାଦ୍ୱାରା ଯେଉଁ ଲୋକକୁ ଗମନ କରନ୍ତି, ଯେଉଁ ସକଳ ବୀର ଧର୍ମ୍ମଯୁଦ୍ଧଦ୍ୱାରା ପ୍ରାଣ ତ୍ୟାଗ କରନ୍ତି, ସେମାନେ ସେହି ଲୋକକୁ ଗମନ କରିଥାନ୍ତି । ୪୪ ।

ଯେଉଁ ସକଳ ବ୍ରାହ୍ମଣ ମୃତ ଅନାଥବ୍ରାହ୍ମଣଙ୍କୁ ବହନ କରନ୍ତି, ସେମାନେ ପଦେ୨ ଆନୁପୂର୍ବିକ ଯଜ୍ଞଫଳ ପ୍ରାପ୍ତ ହୁଅନ୍ତି । ୪୫ ।

ଯେ ସଗୋତ୍ର ବା ବନ୍ଧୁ ନୁହନ୍ତି, ତାଦୃଶ ବ୍ରାହ୍ମଣ ପ୍ରାଣ ତ୍ୟାଗକଲେ ଯେଉଁମାନେ ଦହନ ବହନ କରନ୍ତି, ସେମାନେ କେବଳ ପ୍ରାଣାୟାମଦ୍ୱାରା ଶୁଦ୍ଧ ହୁଅନ୍ତି । ୪୬ ।

ଏହି ସକଳ ବ୍ରାହ୍ମଣଙ୍କର ଶୁଭକାର୍ଯ୍ୟରେ କୌଣସି ବାଧା ହୁଏ ନାହିଁ, କାରଣ କଥିତ ଅଛି ଯେ ଜଳାବଗାହନ ମାତ୍ରକେ ଶୁଦ୍ଧ ହୁଅନ୍ତି ।୪୭।

ଅନୁଗମ୍ୟେଚ୍ଛୟା ପ୍ରେତଂ ଜ୍ଞାତମଜ୍ଞାତମେବ ବା ।
ସ୍ନାତ୍ୱା ଚୈବ ତୁ ସ୍ପୃଷ୍ଟ୍ୱାଗ୍ନିଂ ଘୃତଂ ପ୍ରାଶ୍ୟ ବିଶୁଦ୍ଧ୍ୟତି ॥ ୪୮ ॥
କ୍ଷତ୍ରିୟଂ ମୃତମଜ୍ଞାନାଦ୍ ବ୍ରାହ୍ମଣୋ ଯୋଽନୁଗଚ୍ଛତି ।
ଏକାହମଶୁଚିର୍ଭୂତ୍ୱା ପଞ୍ଚଗବ୍ୟେନ ଶୁଦ୍ଧ୍ୟତି ॥ ୪୯ ॥
ଶବଂ ଚ ବୈଶ୍ୟମଜ୍ଞାନାଦ୍ ବ୍ରାହ୍ମଣୋ ଯୋଽନୁଗଚ୍ଛତି ।
କୃତ୍ୱାଶୌଚଂ ଦ୍ୱିରାତ୍ରଂ ଚ ପ୍ରାଣାୟାମାନ୍ ଷଡ଼ାଚରେତ୍ । ୫୦ ।
ପ୍ରେତୀଭୂତଂ ତୁ ଯଃ ଶୂଦ୍ରଂ ବ୍ରାହ୍ମଣୋ ଜ୍ଞାନଦୁର୍ବଳଃ ।
ନୀୟମାନମନୁଗଚ୍ଛେତ ତ୍ରିରାତ୍ରମଶୁଚିର୍ଭବେତ୍ । ୫୧ ।
ତ୍ରିରାତ୍ରେ ତୁ ତତଃ ପୂର୍ଣ୍ଣେ ନଦୀଂ ଗତ୍ୱା ସମୁଦ୍ରଗାଂ ।
ପ୍ରାଣାୟାମଶତଂ କୃତ୍ୱା ଘୃତଂ ପ୍ରାଶ୍ୟ ବିଶୁଦ୍ଧ୍ୟତି । ୫୨ ।
ବିନିର୍ବର୍ତ୍ୟ ଯଦା ଶୂଦ୍ରା ଉଦକାନ୍ତମୁପସ୍ଥିତାଃ ।
ଦ୍ୱିଜୈସ୍ତଦାନୁଗନ୍ତବ୍ୟା ଇତି ଧର୍ମ୍ମବିଦୋ ବିଦୁଃ । ୫୩ ।

---

ଜ୍ଞାତ ହେଉ ବା ଜ୍ଞାତ ନ ହେଉ, ଯେ କୌଣସି ସଜାତୀୟ ବ୍ୟକ୍ତି ମଲେ ଯେବେ କେହି ସ୍ୱେଚ୍ଛାପୂର୍ବକ ତାହାଙ୍କର ଅନୁଗମନ କରେ, ତାହା ହେଲେ ସ୍ନାନ କରି ଅଗ୍ନି ସ୍ପର୍ଶପୂର୍ବକ ଘୃତ ଭକ୍ଷଣ କଲେ ଶୁଦ୍ଧିଲାଭ କରିବ ।୪୮।

କ୍ଷତ୍ରିୟ ମଲେ ଯେବେ କୌଣସି ବ୍ରାହ୍ମଣ ଅଜ୍ଞାନବଶତଃ ଅନୁଗମନ କରନ୍ତି, ତାହା ହେଲେ ସେ ଏକ ଦିନ ଅଶୁଚି ଥାଇଁ ପଞ୍ଚଗବ୍ୟଭକ୍ଷଣଦ୍ୱାରା ଶୁଦ୍ଧିଲାଭ କରିପାରନ୍ତି । ୪୯ ।

ଯେବେ କୌଣସି ବ୍ରାହ୍ମଣ ଅଜ୍ଞାନବଶତଃ ମୃତବୈଶ୍ୟର ଅନୁଗମନ କରନ୍ତି, ତାହା ହେଲେ ଦୁଇଦିନ ଅଶୁଚି ରହି ଛଅସଂଖ୍ୟକ ପ୍ରାଣାୟାମଦ୍ୱାରା ପବିତ୍ର ହୁଅନ୍ତି । ୫୦ ।

ଯେବେ କୌଣସି ବ୍ରାହ୍ମଣ ଅଜ୍ଞାନବଶତଃ ମୃତଶୂଦ୍ରର ଅନୁଗମନ କରେ ତାହା ହେଲେ ତାହାଙ୍କର ତ୍ରିରାତ୍ରି ଅଶୌଚ ହୁଏ । ୫୧ ।

ଅନନ୍ତର ତ୍ରିରାତ୍ରି ଅତୀତ ହେଲେ ସମୁଦ୍ରଗାମିନୀ ନଦୀରେ ଅବଗାହନପୂର୍ବକ ଏକଶତ ପ୍ରାଣାୟାମ କରି ଘୃତ ଭୋଜନାନନ୍ତର ଶୁଦ୍ଧି ହୋଇ ପାରନ୍ତି । ୫୨ ।

ଧର୍ମ୍ମଶାସ୍ତ୍ରଜ୍ଞ ଋଷି ସ୍ଥିର କରିଅଛନ୍ତି ଯେ ଯେତେବେଳେ ଶୂଦ୍ରମାନେ ଦାହାଦି କର୍ମ୍ମ ସମାଧା କରି ଜଳମଧ୍ୟରୁ ପ୍ରତ୍ୟାବୃତ୍ତ ହେବେ, ସେତେବେଳେ ବ୍ରାହ୍ମଣମାନେ ଅନୁଗମନ କରିପାରିବେ । ୫୩ ।

ତସ୍ମାଦ୍ଦ୍ୱିଜୋ ମୃତଂ ଶୂଦ୍ରଂ ନ ସ୍ପୃଶେ ନ୍ନ ଚ ଦାହୟେତ୍ ।
ଦୃଷ୍ଟେ ସୂର୍ଯ୍ୟାବଲୋକେନ ଶୁଦ୍ଧିରେଷା ପୁରାତନୀ । ୬୪ ।

ଇତି ପାରାଶରେ ଧର୍ମଶାସ୍ତ୍ରେ ତୃତୀୟୋଽଧ୍ୟାୟଃ ।

## ଚତୁର୍ଥ ଅଧ୍ୟାୟ ।

ଅତିମାନାଦତିକ୍ରୋଧାତ୍ ସ୍ନେହାଦ୍ୱା ଯଦିବା ଭୟାତ୍ ।
ଉଦ୍‌ବଧ୍ନୀୟାତ୍ ସ୍ତ୍ରୀ ପୁମାନ୍ ବା ଗତିରେଷା ବିଧୀୟତେ । ୧ ।
ପୂୟ-ଶୋଣିତ-ସମ୍ପୂର୍ଣ୍ଣେ ଅନ୍ଧେ ତମସି ମଜ୍ଜତି ।
ଷଷ୍ଟିବର୍ଷସହସ୍ରାଣି ନରକଂ ପ୍ରତିପଦ୍ୟତେ ।୨ ।
ନାଶୌଚଂ ନୋଦକଂ ନାଗ୍ନି ନାଶ୍ରୁପାତଂ ଚ କାରୟେତ୍ ।
ବୋଢ଼ାରୋଽଗ୍ନି ପ୍ରଦାତାରୋ ରଜ୍ଜୁଚ୍ଛେଦକାସ୍ତଥା । ୨ ।
ତପ୍ତକୃଚ୍ଛ୍ରେଣ ଶୁଦ୍ଧ୍ୟନ୍ତୀତ୍ୟେବମାହ ପ୍ରଜାପତିଃ ।
ଗୋଭିର୍ହତଂ ତଥୋଦ୍‌ବଦ୍ଧଂ ବ୍ରାହ୍ମଣେନ ତୁ ଘାତିତଂ । ୪ ।

---

ଅତଏବ ଦ୍ୱିଜଗଣଙ୍କର କର୍ତ୍ତବ୍ୟ ଏହି ଯେ ଶୂଦ୍ର ମଲେ ସେମାନେ ସ୍ପର୍ଶ ନ କରିବେ, ଦାହ ମଧ ନ କରିବେ । ମୃତଶୂଦ୍ର ଦୃଷ୍ଟ ହେଲେ ସେମାନେ ସୂର୍ଯ୍ୟ ଦର୍ଶନ କରି ଶୁଚି ହେବେ । ୬୪ ।

## ପରାଶର-ସଂହିତା ତୃତୀୟ ଅଧ୍ୟାୟଃ ।

ଯଦ୍ୟପି କୌଣସି ସ୍ତ୍ରୀ ପୁରୁଷ, ଅତି ମାନ ହେତୁ, ସ୍ନେହ ହେତୁ ବା ଭୟ ହେତୁ, ଉଦ୍‌ବନ୍ଧନରେ ପ୍ରାଣତ୍ୟାଗ କରେ, ତାହା ହେଲେ ସେମାନଙ୍କର ଯେପରି ଗତି ହୁଏ ତାହା ବୋଲୁଅଛୁଁ । ୧ ।

( ଈଦୃଶ ବ୍ୟକ୍ତି ଅର୍ଥାତ୍ ଯେ ଉଦ୍‌ବନ୍ଧନଦ୍ୱାରା ଜୀବନ ବିସର୍ଜ୍ଜନ କରେ ସେହି ବ୍ୟକ୍ତି ) ନରକକୁ ଗମନ କରେ ଏବଂ ପୂୟ ଶୋଣିତ ପରିପୂର୍ଣ୍ଣ ଅନ୍ଧତମସ ନାମକ ସ୍ଥାନରେ ଷଷ୍ଟିସହସ୍ର ବର୍ଷପର୍ଯ୍ୟନ୍ତ ମଗ୍ନ ହୋଇଥାଏ ॥

ଉଦ୍‌ବନ୍ଧନଦ୍ୱାରା ଅପମୃତ୍ୟୁ ହେଲେ ଅଶୌଚ ଗ୍ରହଣ କରିବ ନାହିଁ, ଜଳ ପ୍ରଦାନ କରିବ ନାହିଁ, ଅଗ୍ନିରେ ସତ୍କାର କରାଇବ ନାହିଁ, ଅଶ୍ରୁପାତ ମଧ କରାଇବ ନାହିଁ । ଯେଉଁମାନେ ବହନ କରନ୍ତି, ଯେଉଁମାନେ ଦାହ କରନ୍ତି, ଯେଉଁମାନେ ରଜ୍ଜୁଚ୍ଛେଦନ କରନ୍ତି, ସେମାନେ ସମସ୍ତେ ତପ୍ତକୃଚ୍ଛ୍ର-ଦ୍ୱାରା ଶୁଦ୍ଧିଲାଭ କରିବାକୁ ପାରନ୍ତି, ମହର୍ଷି ପ୍ରଜାପତି ଏହିପରି ବ୍ୟବସ୍ଥା କରିଅଛନ୍ତି । ୩ । ୪ ।

ସଂସ୍କୃତ ପାଠ:

ଘାତୟନ୍ତି ତୁ ଯେ ବପ୍ରା ବୋଢ଼ାରସ୍ତାଗ୍ନିଦାସ୍ତୁ ଯେ । ୫ ।
ଅନ୍ୟେଽପି ବାନୁଗନ୍ତାରଃ ପାଶଚ୍ଛେଦକସ୍ତୁ ଯେ ।
ତପ୍ତକୃଚ୍ଛ୍ରେଣ ଶୁଦ୍ଧ୍ୟନ୍ତି କୁର୍ଯ୍ୟୁର୍ବ୍ରାହ୍ମଣଭୋଜନଂ । ୬ ।
ଅନଡୁହ-ସହିତାଂ ଗାଂ ଚ ଦଦ୍ୟୁର୍ବିପ୍ରାୟ ଦକ୍ଷିଣାଂ ।
ତ୍ର୍ୟହମୁଷ୍ଣଂ ପିବେଦାପସ୍ତ୍ର୍ୟହମୁଷ୍ଣଂ ପୟଃ ପିବେତ୍ । ୭ ।
ତ୍ର୍ୟହମୁଷ୍ଣଂ ଘୃତଂ ପିତ୍ୱା ବାୟୁଭକ୍ଷୋ ଦିନତ୍ରୟଂ ।
ଯୋ ବୈ ସମାଚରେତ୍ ବପ୍ରଃ ପତିତାଦସ୍ୱକାମତଃ । ୮ ।
ପଞ୍ଚାହଂ ବା ଦଶାହଂ ବା ଦ୍ୱାଦଶାହମଥାପି ବା ।
ମାସାର୍ଦ୍ଧଂ ମାସମେକଂ ବା ମାସଦ୍ୱୟମଥାପି ବା । ୯ ।
ଅବ୍ଦାର୍ଦ୍ଧମବ୍ଦମେକଂ ବା ତଦୂର୍ଦ୍ଧ୍ୱଂ ଚୈବ ତତ୍ସମଃ ।
ତ୍ରିରାତ୍ରଂ ପ୍ରଥମେ ପକ୍ଷେ ଦ୍ୱିତୀୟେ କୃଚ୍ଛ୍ରମାଚରେତ୍ । ୧୦ ।

---

ଯେଉଁ ବ୍ୟକ୍ତି ଗୋଦ୍ୱାରା ବ୍ରାହ୍ମଣଦ୍ୱାରା ବା ଉଦ୍‌ବନ୍ଧନଦ୍ୱାରା ହତ ହୋଇଥିବ, ତାହାକୁ ଯେ ସକଳ ବ୍ରାହ୍ମଣ ଦହନ ବହନ ବା ସ୍ପର୍ଶ କରିବେ । ୫ ।

ଏବଂ ଯେଉଁମାନେ ତାହାଙ୍କ ଅନୁଗମନ କରିବେ, ଯେଉଁମାନେ ତାହାଙ୍କ ପାଶଚ୍ଛେଦନ କରିବେ, ସେମାନେ ସମସ୍ତେ ତପ୍ତକୃଚ୍ଛ୍ରଦ୍ୱାରା ଶୁଦ୍ଧିଲାଭ କରିବେ ଏବଂ ବ୍ରାହ୍ମଣ ଭୋଜନ କରାଇବେ । ୬ ।

ଏବଂ ବ୍ରାହ୍ମଣଙ୍କୁ ଦକ୍ଷିଣା ସ୍ୱରୂପ ବୃଷସହିତ ଗୋଦାନ କରିବେ ଓ ତିନଦିନ ଉଷ୍ଣଜଳ ତିନଦିନ ଉଷ୍ଣଦୁଗ୍ଧ ପାନ କରିବେ । ୭ ।

ଯେ ବ୍ରାହ୍ମଣ ଅନିଚ୍ଛାପୂର୍ବକ ପତିତାଦିସହିତ ଆହାର ବ୍ୟବହାର କରିବେ ସେ ତିନଦିନ ଉଷ୍ଣଦୁଗ୍ଧ ପାନ କରି, ତିନଦିନ ବାୟୁଭକ୍ଷ ହୋଇ ରହିବେ । ୮ ।

ତାହା ଯେବେ ପାଞ୍ଚଦିନ ବା ଦଶଦିନ ବା ଦ୍ୱାଦଶଦିନ ବା ପଞ୍ଚଦଶ ଦିନ ବା ଏକମାସ ବା ଦୁଇମାସ । ୯ ।

ଛମାସ ବା ଏକବର୍ଷ ଅଥବା ଏକବର୍ଷ ସଦୃଶ ବା ତାହାଠାରୁ ଅଧିକଦିନ ପର୍ଯ୍ୟନ୍ତ ଘଟିଥାଏ, ତାହାହେଲେ ପ୍ରଥମପକ୍ଷରେ ଅର୍ଥାତ୍ ପାଞ୍ଚଦିନ ବ୍ୟବହାରରେ ତ୍ରିରାତ୍ରି କରିବାକୁ ହେବ । ଦ୍ୱିତୀୟପକ୍ଷରେ ଅର୍ଥାତ୍ ଦଶଦିନ ବ୍ୟବହାର କଲେ କୃଚ୍ଛ୍ରବ୍ରତ କରିବାକୁ ହେବ । ୧୦ ।

ତୃତୀୟେ ଚୈବ ପକ୍ଷେ ତୁ କୃଚ୍ଛ୍ରଂ ଶାନ୍ତପନଂ ଚରେତ୍ ।
ଚତୁର୍ଥେ ଦଶରାତ୍ରଂ ସ୍ୟାତ୍ ପରାକଃ ପଞ୍ଚମେ ମତଃ ॥ ୧୧ ॥
କୁର୍ଯ୍ୟାଚ୍ଚାନ୍ଦ୍ରାୟଣଂ ଷଷ୍ଠେ ସପ୍ତମେ ତ୍ୱୈନ୍ଦବଦ୍ୱୟଂ ।
ଶୁଦ୍ଧ୍ୟର୍ଥମଷ୍ଟମେ ଚୈବ ଷଣ୍ମାସାନ୍ କୃଚ୍ଛ୍ରମାଚରେତ୍ ॥ ୧୨ ॥
ପକ୍ଷସଂଖ୍ୟାପ୍ରମାଣେନ ସୁବର୍ଣ୍ଣାନ୍ୟପି ଦକ୍ଷିଣା ॥ ୧୩ ॥
ଋତୁସ୍ନାତା ତୁ ଯା ନାରୀ ଭର୍ତ୍ତାରଂ ନୋପସର୍ପତି ।
ସା ମୃତା ନରକଂ ଯାତି ବିଧବା ଚ ପୁନଃ ପୁନଃ ॥ ୧୪ ॥
ଋତୌ ସ୍ନାତାଂ ତୁ ଯୋ ଭାର୍ଯ୍ୟାଂ ସନ୍ନିଧୌ ନୋପଗଚ୍ଛତି ।
ଘୋରାୟାଂ ଭ୍ରୂଣହତ୍ୟାୟାଂ ଯୁଜ୍ୟତେ ନାତ୍ର ସଂଶୟଃ ॥ ୧୫ ॥

---

ତୃତୀୟପକ୍ଷରେ ଅର୍ଥାତ୍ ଦ୍ୱାଦଶଦିନ ବ୍ୟବହାର କଲେ କୃଚ୍ଛ୍ର-ସାନ୍ତ-ପନ-ବ୍ରତ ଅନୁଷ୍ଠାନ କରିବାକୁ ହେବ । ଚତୁର୍ଥପକ୍ଷରେ ଅର୍ଥାତ୍ ପଞ୍ଚଦଶ-ଦିନ ବ୍ୟବହାର ହେଲେ ଦଶରାତ୍ରି କରିବାକୁ ହେବ । ପଞ୍ଚମପକ୍ଷରେ ଅର୍ଥାତ୍ ଏକମାସ ବ୍ୟବହାର ହେଲେ ପରାକ୍ ବ୍ରତ ଆଚରଣ କରିବାକୁ ହେବ । ୧୧ ।

ଷଷ୍ଠପକ୍ଷରେ ଅର୍ଥାତ୍ ଦୁଇମାସ ବ୍ୟବହାର ହେଲେ ଚାନ୍ଦ୍ରାୟଣ ବ୍ରତ କରିବାକୁ ହେବ । ସପ୍ତମପକ୍ଷରେ ଅର୍ଥାତ୍ ଛଅମାସ ବ୍ୟବହାର ହେଲେ ଦୁଇ ଚାନ୍ଦ୍ରାୟଣ କରିବାକୁ ହେବ । ଅଷ୍ଟମପକ୍ଷରେ ଅର୍ଥାତ୍ ଏକବର୍ଷ ଗତ ଊର୍ଦ୍ଧ୍ୱ ଅଧିକ କାଳ ସହବାସ ହେଲେ ଶୁଦ୍ଧିନିମିତ୍ତ ଛଅମାସ କୃଚ୍ଛ୍ରବ୍ରତ କରିବାକୁ ହେବ । ୧୨ ।

ଯେତେ ପକ୍ଷ ବ୍ୟବହାର କରା ହେବ, ତେତେ ପରିମାଣରେ ସୁବର୍ଣ୍ଣ ଅର୍ଥାତ୍ ମୋହର ଦକ୍ଷିଣା ଦେବାକୁ ହେବ । ୧୩ ।

ଯେ ସ୍ତ୍ରୀ ଋତୁସ୍ନାତା ହୋଇ ସ୍ୱାମିଙ୍କ ନିକଟରେ ଉପଗତା ନ ହୁଏ, ସେ ମୃତ୍ୟୁପରେ ନରକକୁ ଗମନ କରେ ଏବଂ ଅନେକଜନ୍ମ ବୈଧବ୍ୟଯନ୍ତ୍ରଣା ଭୋଗ କରୁଥାଏ । ୧୪ ।

ସ୍ତ୍ରୀ ଋତୁସ୍ନାତା ହେଲେ ଯେ ଭର୍ତ୍ତା ତାହାନିକଟକୁ ଉପଗତ ନ ହୁଏ, ସେ ଘୋର ଭ୍ରୂଣହତ୍ୟା—ପାତକରେ ପତିତ ହୁଏ ଏଥିରେ ସନ୍ଦେହ ନାହିଁ ।୧୫ ।

ଅଦୁଷ୍ଟା-ପତିତାଂ ଭାର୍ଯ୍ୟାଂ ଯୌବନେ ଯଃ ପରିତ୍ୟଜେତ୍ ।
ସପ୍ତଜନ୍ମ ଭବେତ୍ ସ୍ତ୍ରୀତ୍ୱଂ ବୈଧବ୍ୟଂ ଚ ପୁନଃ ପୁନଃ ॥ ୧୬ ॥
ଦରିଦ୍ରଂ ବ୍ୟାଧିତଂ ମୂର୍ଖଂ ଭର୍ତ୍ତାରଂ ଯା ନ ମନ୍ୟତେ ।
ସା ମୃତା ଜାୟତେ ବ୍ୟାଳୀ ବୈଧବ୍ୟଂ ଚ ପୁନଃ ପୁନଃ ॥ ୧୭ ॥
ଓଘବାତାହୃତଂ ବୀଜଂ ଯଥା କ୍ଷେତ୍ରେ ପ୍ରରୋହତି ।
କ୍ଷେତ୍ରୀ ତଲ୍ଲଭତେ ବୀଜଂ ନ ବୀଜୀ ଭାଗମର୍ହତି ॥ ୧୮ ॥
ତଦ୍ୱତ୍ ପରସ୍ତ୍ରିୟାଃ ପୁତ୍ରୌ ଦ୍ୱୌ ସୁତୌ କୁଣ୍ଡଗୋଲକୌ ।
ପତ୍ୟୌ ଜୀବତି କୁଣ୍ଡଃ ସ୍ୟାନ୍ମୃତେ ଭର୍ତ୍ତରି ଗୋଲକଃ ॥ ୧୯ ॥
ଔରସଃ କ୍ଷେତ୍ରଜଶ୍ଚୈବ ଦତ୍ତଃ କୃତ୍ରିମକଃ ସୁତଃ ।
ଦଦ୍ୟାନ୍ମାତା ପିତା ବାପି ସ ପୁତ୍ରୋ ଦତ୍ତକୋ ଭବେତ୍ ॥ ୨୦ ॥
ପରିବିତ୍ତିଃ ପରୀବେତ୍ତା ଯୟା ଚ ପରିବିଦ୍ୟତେ ।
ସର୍ବ୍ବେ ତେ ନରକଂ ଯାନ୍ତି ଦାତୃଯାଜକପଞ୍ଚମାଃ ॥ ୨୧ ॥

---

ପତିତା ଅଥବା ଦୁଷ୍ଟା ନୋହିଥିବା ଭାର୍ଯ୍ୟାଙ୍କୁ ଯେଉଁ ବ୍ୟକ୍ତି ଯୌବନକାଳରେ ପରିତ୍ୟାଗ କରେ, ସେ ସାତଜନ୍ମ ଯାଏ ସ୍ତ୍ରୀ ଜନ୍ମ ହୋଇ ପୁଃନ ପୁନଃ ବୈଧବ୍ୟଯନ୍ତ୍ରଣା ଭୋଗ କରେ । ୧୬ ।

ଯେ କାମିନୀ ଦରିଦ୍ର ପିଡ଼ିତ ଏବଂ ମୂର୍ଖ ସ୍ୱାମୀଙ୍କୁ ଅବଜ୍ଞା କରେ, ସେ ମୃତ୍ୟୁ ଉତ୍ତାରୁ ସର୍ପଯୋନୀରେ ଉତ୍ପନ୍ନ ହୁଏ ଏବଂ ବହୁଜନ୍ମଯାଏ ବୈଧବ୍ୟ-ଯନ୍ତ୍ରଣା ଭୋଗ କରେ । ୧୭ ।

ଯେମନ୍ତ ବୀଜ, ବାୟୁ ପ୍ରବାହଦ୍ୱାରା ଚାଳିତ ହୋଇ କୌଣସି କ୍ଷେତ୍ରରେ ପତିତ ହେଲେ କ୍ଷେତ୍ରସ୍ୱାମୀ ତାହାର ଅଧିକାରୀ ହୁଏ, ବୀଜସ୍ୱାମୀ ତତ୍-ସମୁଦାୟ ବା ତାହାର କୌଣସି ଅଂଶ ପ୍ରାପ୍ତ ହୁଏ ନାହିଁ । ୧୮ ।

ସେହିପରି ପରସ୍ତ୍ରୀର ପୁତ୍ର ଦୁଇପ୍ରକାର, କୁଣ୍ଡ ଓ ଗୋଳକ । ଏମାନେ ଜନନୀଙ୍କର ଅଧିକୃତ, ଜନକଙ୍କର ଅଧିକୃତ ନୁହନ୍ତି । ଭର୍ତ୍ତା ଜୀବନ୍ତ ଥାଉଁ ଅନ୍ୟ ପୁରୁଷଦ୍ୱାରା ଯେ ପୁତ୍ର ଉତ୍ପାଦିତ ହୁଏ, ତାହାର ନାମ କୁଣ୍ଡ ଭର୍ତ୍ତାଙ୍କର ମୃତ ହେଲେ ପରପୁରୁଷଦ୍ୱାରା ଯେ ସନ୍ତାନ ଉତ୍ପାଦିତ ହୁଏ, ତାହାର ନାମ ଗୋଳକ । ୧୯ ।

ପୁତ୍ର ଚାରିପ୍ରକାର, ଔରସ, କ୍ଷେତ୍ରଜ, ଦତ୍ତକ ଏବଂ କୃତ୍ରିମ । ମାତା ପିତା ଯେଉଁ ପୁତ୍ରକୁ ଦାନ କରନ୍ତି, ସେହି ପୁତ୍ରର ନାମ ଦତ୍ତକ । ୨୦ ।

ପରିବିତ୍ତି ଅର୍ଥାତ୍ ଯେ ବ୍ୟକ୍ତି ଅବିବାହିତ ଥାଉଁ ତତ୍ କନିଷ୍ଠ

ଦାରାଗ୍ନି ହୋତ୍ର-ସଂଯୋଗଂ ଯଃ କୁର୍ଯ୍ୟାଦଗ୍ରଜେ ସତି ।
ପରିବେତ୍ତା ସ ବିଜ୍ଞେୟଃ ପରିବିତ୍ତିସ୍ତୁ ପୂର୍ବଜଃ ॥ ୨୨ ॥
ଦ୍ୱୌ କୃଚ୍ଛ୍ରୌ ପରିବିତ୍ତେସ୍ତୁ କନ୍ୟାୟାଃ କୃଚ୍ଛ୍ର ଏବଚ ।
କୃଚ୍ଛ୍ରାତିକୃଚ୍ଛ୍ରୌ ଦାତୁସ୍ତୁ ହୋତା ଚାନ୍ଦ୍ରାୟଣଂ ଚରେତ୍ ॥ ୨୩ ॥
କୁବ୍ଜବାମନଷଣ୍ଢେଷୁ ଗଦ୍ଗଦେଷୁ ଜଡ଼େଷୁ ଚ ।
ଜାତ୍ୟନ୍ଧେ ବଧିରେ ମୂକେ ନ ଦୋଷଃ ପରିବେଦନେ । ୨୪ ॥
ପିତୃବ୍ୟପୁତ୍ରଃ ସାପତ୍ନ୍ୟଃ ପରନାରୀସୁତସ୍ତଥା ।
ଦାରାଗ୍ନି ହୋତ୍ର ସଂଯୋଗେ ନ ଦୋଷଃ ପରିବେଦନେ ॥ ୨୫ ॥
ଜ୍ୟେଷ୍ଠୋ ଭ୍ରାତା ଯଦା ତିଷ୍ଠେଦାଧାନଂ ନୈବ ଚିନ୍ତୟେତ୍ ।
ଅନୁଜ୍ଞାତସ୍ତୁ କୁର୍ବୀତ ଶଙ୍ଖସ୍ୟ ବଚନଂ ଯଥା ॥ ୨୬ ॥

---

ଭ୍ରାତାର ବିବାହ ହୁଏ, ପରିବେତ୍ତା ଅର୍ଥାତ୍ ଯେଉଁବ୍ୟକ୍ତି ଜ୍ୟେଷ୍ଠଭ୍ରାତାଙ୍କୁ ଅତିକ୍ରମପୂର୍ବକ ଅଗ୍ରେ ବିବାହ ହୁଏ, ପରିବିତ୍ତି ଅର୍ଥାତ୍ ଜ୍ୟେଷ୍ଠ ଅବିବାହିତ ଥାଉଁ କନିଷ୍ଠଭ୍ରାତା ଯେଉଁ କନ୍ୟାକୁ ବିବାହ ହୁଏ, ଏହି ତିନିଜଣ, ଇଦୃଶ ବିବାହ ସ୍ଥଳରେ ଯେଉଁବ୍ୟକ୍ତି କନ୍ୟାଦାନ କରନ୍ତି ବା ପୌରୋହିତ୍ୟ କରନ୍ତି; ସେମାନେ ସମସ୍ତେ ନରକଗାମୀ ହୁଅନ୍ତି । ୨୧ ।

ଯେଉଁବ୍ୟକ୍ତି ଜ୍ୟେଷ୍ଠଭ୍ରାତାଙ୍କୁ ଅତିକ୍ରମ କରି ଅଗ୍ରରେ ଦାରପରିଗ୍ରହ-ପୂର୍ବକ ଅଗ୍ନି ହୋତ୍ରୀ ହୁଏ, ତାହାର ନାମ ପରିବେତ୍ତା ଏବଂ ତାହାର ଜ୍ୟେଷ୍ଠଭ୍ରାତାର ନାମ ପରିବିତ୍ତି । ୨୨ ।

ପରିବିତ୍ତିଙ୍କର କୃଚ୍ଛ୍ରଦ୍ୱୟ, କନ୍ୟାର ଏକକୃଚ୍ଛ୍ର, କନ୍ୟାଦାତାଙ୍କର କୃଚ୍ଛ୍ରାତିକୃଚ୍ଛ୍ର, ପୁରୋହିତଙ୍କର ଚାନ୍ଦ୍ରାୟଣ ବ୍ରତରୂପ ପ୍ରାୟଶ୍ଚିତ୍ତ କରିବାକୁ ହେବ ।୨୩

ଯେବେ ଜ୍ୟେଷ୍ଠଭ୍ରାତା କୁବ୍ଜ, ବାମନ, ଷଣ୍ଢ, ଗଦ୍ଗଦ, ଅବ୍ୟକ୍ତଶବ୍ଦଭାଷୀ ଜଡ଼, ଜନ୍ମାନ୍ଧ, ବଧିର ଓ ମୂକ ଅର୍ଥାତ୍ ବୋବା ହୁଅନ୍ତି, ତାହା ହେଲେ ପରିବେଦନରେ ଦୋଷ ନାହିଁ ଅର୍ଥାତ୍ ଉକ୍ତ ପ୍ରକାର ଜ୍ୟେଷ୍ଠଭ୍ରାତା ଥାଉଁ କନିଷ୍ଠଭ୍ରାତା ବିବାହ ହୋଇ ପାରନ୍ତି । ୨୪ ।

ପିତୃବ୍ୟପୁତ୍ର ବୈମାତ୍ରେୟ ଭ୍ରାତା ଓ ପରନାରୀପୁତ୍ର ଇଦୃଶ ଭ୍ରାତା ଯେବେ ଜ୍ୟେଷ୍ଠ ମଧ୍ୟ ଅବିବାହିତ ଥାଏ, ତାହା ହେଲେ କନିଷ୍ଠଙ୍କର ଦାରପରିଗ୍ରହ ଓ ଅଗ୍ନି ହୋତ୍ର ସଂଯୋଗରେ ଦୋଷ ଘଟେ ନାହିଁ । ୨୫ ।

ଯେବେ ଜ୍ୟେଷ୍ଠ ସହୋଦର ବିଦ୍ୟମାନ ଥାଇ ଦାରପରିଗ୍ରହ କରିବାକୁ ଅନଭିଳାଷୀ ହୁଅନ୍ତି ତାହା ହେଲେ ତାହାଙ୍କର ଅନୁଜ୍ଞା ନେଇ କନିଷ୍ଠ

ନଷ୍ଟେ ମୃତେ ପ୍ରବ୍ରଜିତେ କ୍ଳୀବେ ଚ ପତିତେ ପତୌ ।
ପଞ୍ଚସ୍ୱାପସ୍ତ୍ର ନାରୀଣାଂ ପତିରନ୍ୟୋ ବିଧୀୟତେ ॥ ୨୭ ॥
ମୃତେ ଭର୍ତ୍ତରି ଯା ନାରୀ ବ୍ରହ୍ମଚର୍ଯ୍ୟେ ବ୍ୟବସ୍ଥିତା ।
ସା ମୃତା ଲଭତେ ସ୍ୱର୍ଗଂ ଯଥା ତେ ବ୍ରହ୍ମଚାରିଣଃ ॥ ୨୮ ॥
ତିସ୍ରଃ କୋଟ୍ୟୋର୍ଦ୍ଧକୋଟୀ ଚ ଯାନି ରୋମାଣି ମାନବେ ।
ତାବତ୍କାଳଂ ବସେତ୍ ସ୍ୱର୍ଗଂ ଭର୍ତ୍ତାରଂ ଯାନୁଗଚ୍ଛତି ॥ ୨୯ ॥
ବ୍ୟାଳଗ୍ରାହୀ ଯଥା ବ୍ୟାଳଂ ବଳାଦୁଦ୍ଧରତେ ବଳାତ୍ ।
ଏବମୁଦ୍ଧୃତ୍ୟ ଭର୍ତ୍ତାରଂ ତେନୈବ ସହ ମୋଦତେ ॥ ୩୦ ॥

ଇତି ପାରାଶରେ ଧର୍ମଶାସ୍ତ୍ରେ ଚତୁର୍ଥୋଽଧ୍ୟାୟଃ ।

---

ଭିନ୍ନ ବିବାହ ହୋଇ ପାରିବେ । ଏ ବିଷୟ ଶଙ୍ଖବଚନରେ ମଧ୍ୟ ଅନୁମୋଦିତ । ୨୭ ।

ସ୍ୱାମୀ ଯେବେ ନିରୁଦ୍ଦେଶ ହୁଏ, କାଳଗ୍ରାସରେ ପତିତ ହୁଏ, ପ୍ରବ୍ରଜ୍ୟା ଅବଲମ୍ବନ କରେ, କ୍ଳୀବ ହୁଏ, ପତିତ ହୁଏ, ତାହା ହେଲେ ଏହି ପଞ୍ଚବିଧ ଆପଦରେ ନାରୀର ଅନ୍ୟପତି ଶାସ୍ତ୍ରବିହିତ ହୋଇପାରେ ॥

ପରନ୍ତୁ ସ୍ୱାମିର ମୃତ୍ୟୁ ହେଲେ ଯେଉଁ ନାରୀ ବ୍ରହ୍ମଚର୍ଯ୍ୟ ଅବଲମ୍ବନପୂର୍ବକ ଅବସ୍ଥାନ କରେ, ସେ ମୃତ୍ୟୁପରେ ନୈଷ୍ଠିକ ବ୍ରହ୍ମଚାରୀଙ୍କ ପରି ସ୍ୱର୍ଗଲାଭ କରିଥାଏ । ୨୮ ।

ଯେ ନାରୀ ସ୍ୱାମିଙ୍କ ଅନୁଗମନ କରେ ସେ, ଶରୀରରେ ଯେଉଁ ସାର୍ଦ୍ଧତ୍ରିକୋଟି ଲୋମ ଅଛି, ତାବତ୍ ପରିମିତ ବର୍ଷ ପର୍ଯ୍ୟନ୍ତ ସ୍ୱର୍ଗରେ ବାସ କରେ । ୨୯ ।

ବ୍ୟାଳଗ୍ରାହୀ ଯେପରି ବଳପୂର୍ବକ ଗର୍ତ୍ତରୁ ସର୍ପକୁ ଉଦ୍ଧାର କରେ, ସେହିପରି ସେହି ( ସହମରଣପ୍ରବୃତ୍ତା ) ନାରୀ ଭର୍ତ୍ତାଙ୍କୁ ଉଦ୍ଧାର କରି ତାହାଙ୍କ ସହିତ ସ୍ୱର୍ଗସୁଖ ଅନୁଭବ କରେ । ୩୦ ।

ପରାଶର-ସଂହିତା ଚତୁର୍ଥ ଅଧ୍ୟାୟ ।

---

पञ्चमोऽध्यायः ।

ଶ୍ୱବୃକାଭ୍ୟାଂ ଶୃଗାଳାଦ୍ୟୈର୍ଯଦି ଦଷ୍ଟସ୍ତୁ ବ୍ରାହ୍ମଣଃ ।
ସ୍ନାତ୍ୱା ଜପେତ ଗାୟତ୍ରୀଂ ପବିତ୍ରାଂ ବେଦମାତରମ୍ ॥ ୧ ॥
ଗବାଂ ଶୃଙ୍ଗୋଦକେ ସ୍ନାତୋ ମହାନଦ୍ୟାଂ ତୁ ସଙ୍ଗମେ ।
ସମୁଦ୍ରଦର୍ଶନାଦ୍ୱାପି ଶୁନା ଦଷ୍ଟଃ ଶୁଚିର୍ଭବେତ୍ ॥ ୨ ॥
ବେଦବିଦ୍ୟାବ୍ରତସ୍ନାତଃ ଶୁନା ଦଷ୍ଟସ୍ତୁ ବ୍ରାହ୍ମଣଃ ।
ସ ହିରଣ୍ୟୋଦକେ ସ୍ନାତ୍ୱା ଘୃତଂ ପ୍ରାଶ୍ୟ ବିଶୁଧ୍ୟତି ॥ ୩ ॥
ସବ୍ରତସ୍ତୁ ଶୁନା ଦଷ୍ଟସ୍ତ୍ରିରାତ୍ରଂ ସମୁପୋଷିତଃ ।
ଘୃତଂ କୁଶୋଦକଂ ପୀତ୍ୱା ବ୍ରତଶେଷଂ ସମାପୟେତ୍ ॥ ୪ ॥
ଅବ୍ରତଃ ସବ୍ରତୋ ବାପି ଶୁନା ଦଷ୍ଟୋ ଭବେଦ୍ଦ୍ୱିଜଃ ।
ପ୍ରଣିପତ୍ୟ ଭବେତ୍ ପୂତୋ ବିପ୍ରୈଶ୍ଚକ୍ଷୁର୍ନିରୀକ୍ଷିତଃ ॥ ୫ ॥
ଶୁନାଘ୍ରାତାବଲୀଢ଼ସ୍ୟ ନଖୈର୍ବିଲିଖିତସ୍ୟ ଚ ।
ଅଦ୍ଭିଃ ପ୍ରକ୍ଷାଳନାଚ୍ଛୁଦ୍ଧିରଗ୍ନିନା ଚୋପଚୂଳନମ୍ ॥ ୬ ॥

---

ଯେବେ କୌଣସି ବ୍ରାହ୍ମଣ କୁକ୍କୁର କର୍ତ୍ତୃକ, ବୃକ କର୍ତ୍ତୃକ, ବା ଶୃଗାଳାଦି କର୍ତ୍ତୃକ ଦଷ୍ଟ ହୁଅନ୍ତି, ତାହା ହେଲେ ସ୍ନାନପୂର୍ବକ, ବେଦମାତା ପବିତ୍ରା ଗାୟତ୍ରୀ ଜପ କରିବେ । ୧ ।

କୁକ୍କୁରଦଷ୍ଟବ୍ୟକ୍ତି ଗୋଶୃଙ୍ଗୋଦକରେ ଅଥବା ମହାନଦୀସଙ୍ଗମରେ ସ୍ନାନକରି ଅଥବା ସମୁଦ୍ର ଦର୍ଶନକରି ଶୁଚି ହେବ । ୨ ।

ବେଦପାଠଦ୍ୱାରା, ବିଦ୍ୟାଦ୍ୱାରା, ବ୍ରତାଚରଣଦ୍ୱାରା ପବିତ୍ର କୌଣସି ବ୍ରାହ୍ମଣ ଯେବେ କୁକ୍କୁରକର୍ତ୍ତୃକ ଦଷ୍ଟ ହୁଅନ୍ତି, ତାହା ହେଲେ ସେ ସୁବର୍ଣ୍ଣସଂଯୁକ୍ତ ଜଳରେ ସ୍ନାନପୂର୍ବକ ଘୃତ ପାନକରି ଶୁଦ୍ଧିଲାଭ କରିବେ ।୩।

ବ୍ରତନିଷ୍ଠ ବ୍ରାହ୍ମଣ କୁକ୍କୁରକର୍ତ୍ତୃକ ଦଷ୍ଟ ହେଲେ ତ୍ରିରାତ୍ର ଉପୋଷିତ ଥାଇ ଘୃତ ଓ କୁଶୋଦକ ପାନପୂର୍ବକ ବ୍ରତ ଶେଷ ସମାଧାନ କରିବେ ।୪।

ବ୍ରାହ୍ମଣ ବ୍ରତନିଷ୍ଠ ବା ବ୍ରତହୀନ ହୁଅନ୍ତୁ, ଯେବେ ସେ କୁକ୍କୁରକର୍ତ୍ତୃକ ଦଷ୍ଟ ହୁଅନ୍ତି ତାହା ହେଲେ ସେ ପ୍ରଣିପାତପୂର୍ବକ ବ୍ରାହ୍ମଣ କର୍ତ୍ତୃକ ନିରୀକ୍ଷିତ ହୋଇ ପବିତ୍ର ହେବେ । ୫ ।

ଯେବେ କୌଣସି ବ୍ୟକ୍ତି କୁକ୍କୁର କର୍ତ୍ତୃକ ଆଘ୍ରାତ ଅବଲୀଢ଼ ଅଥବା ନଖଦ୍ୱାରା ବିଲିଖିତ ହୁଅନ୍ତି, ତାହା ହେଲେ ଜଳଦ୍ୱାରା ପ୍ରକ୍ଷାଳନପୂର୍ବକ ସେହି ସ୍ଥାନରେ ଅଗ୍ନିସ୍ପର୍ଶ କରାଇଲେ ଶୁଦ୍ଧିଲାଭ କରିପାରନ୍ତି । ୬ ।

ଶୁନା ଚ ବ୍ରାହ୍ମଣୀ ଦଷ୍ଟା ଜମ୍ବୁକେନ ବୃକେଣ ବା ।
ଉଦିତଂ ସୋମନକ୍ଷତ୍ରଂ ଦୃଷ୍ଟ୍ୱା ସଦ୍ୟଃ ଶୁଚିର୍ଭବେତ୍ ॥ ୭ ॥
କୃଷ୍ଣପକ୍ଷେ ଯଥା ସୋମୋ ନ ଦୃଶ୍ୟେତ କଦାଚନ ।
ଯାଂ ଦିଶଂ ବ୍ରଜତେ ସୋମସ୍ତାଂ ଦିଶଂ ଚାବଲୋକୟେତ୍ ॥ ୮ ॥
ଅସଦ୍‌ବ୍ରାହ୍ମଣକେ ଗ୍ରାମେ ଶୁନା ଦଷ୍ଟସ୍ତୁ ବ୍ରାହ୍ମଣଃ ।
ବୃଷଂ ପ୍ରଦକ୍ଷିଣୀକୃତ୍ୟ ସଦ୍ୟଃ ସ୍ନାତ୍ୱା ଶୁଚିର୍ଭବେତ୍ ॥ ୯ ॥
ଚଣ୍ଡାଳେନ ଶ୍ୱପାକେନ ଗୋଭିର୍ବିପ୍ରୈର୍ହତୋ ଯଦି ।
ଆହିତାଗ୍ନି ମୃତୋ ବିପ୍ରୋ ବିଷେଣାତ୍ମହତୋ ଯଦି ॥ ୧୦ ॥
ଦହେତ୍ତଂ ବ୍ରାହ୍ମଣଂ ବିପ୍ରୋ ଲୋକାଗ୍ନୌ ମନ୍ତ୍ରବର୍ଜିତଂ ।
ସ୍ପୃଷ୍ଟ୍ୱା ବୋଢ୍ୱା ଚ ଦଗ୍ଧ୍ୱା ଚ ସପିଣ୍ଡେଷୁ ଚ ସର୍ବଥା ॥ ୧୧ ॥
ପ୍ରାଜାପତ୍ୟଂ ଚରେତ୍ ପଶ୍ଚାଦ୍‌ବିପ୍ରାଣାମନୁଶାସନାତ୍ ।
ଦଗ୍ଧାସ୍ଥୀନି ପୁନର୍ଗୃହ୍ୟ କ୍ଷୀରୈଃ ପ୍ରକ୍ଷାଳୟେଦ୍ ଦ୍ୱିଜଃ ॥ ୧୨ ॥

---

ବ୍ରାହ୍ମଣୀ ଯେବେ କୁକୁର କର୍ତ୍ତୃକ, ଜମ୍ବୁକ କର୍ତ୍ତୃକ, ବୃକ କର୍ତ୍ତୃକ, ଦଷ୍ଟା ହୁଅନ୍ତି, ତାହା ହେଲେ ଚନ୍ଦ୍ର ଓ ନକ୍ଷତ୍ରଙ୍କ ଉଦୟ ଦେଖି ସଦ୍ୟ ଶୁଚି ଲାଭ କରିବେ । ୭ ।

ଯେବେ କୃଷ୍ଣପକ୍ଷରେ କୌଣସିରୂପରେ ଚନ୍ଦ୍ରଦର୍ଶନ ନ ହୁଏ, ତାହା ହେଲେ ଚନ୍ଦ୍ର ଯେଉଁଦିଗରେ ଥାନ୍ତି, ସେହିଦିଗକୁ ଅବଲୋକନ କରିବେ । ୮ ।

ଯେଉଁ ଗ୍ରାମରେ ଅପର କୌଣସି ବ୍ରାହ୍ମଣ ନାହିଁ, ସେହି ଗ୍ରାମରେ ଯେବେ କୌଣସି ବ୍ରାହ୍ମଣ କୁକୁରକର୍ତ୍ତୃକ ଦଷ୍ଟ ହୁଅନ୍ତି ତାହା ହେଲେ ସେ ବୃଷ ପ୍ରଦକ୍ଷିଣପୂର୍ବକ ସଦ୍ୟସ୍ନାନ କରି ଶୁଚି ଲାଭ କରିବେ । ୯ ।

ଯେବେ ଆହିତାଗ୍ନି ବ୍ରାହ୍ମଣ, ଶ୍ୱପାକ କି ଚଣ୍ଡାଳ ବା ଗୋ କର୍ତ୍ତୃକ ହତ ହୋଇ ମୃତ୍ୟୁ ମୁଖରେ ପତିତ ହୁଅନ୍ତି ଅଥବା ଯେବେ ସେ ବିଷପ୍ରୟୋଗ-ପୂର୍ବକ ଆତ୍ମହତ୍ୟା କରନ୍ତି । ୧୦ ।

ତାହା ହେଲେ ଲୌକିକ ଅଗ୍ନିରେ ତାହାଙ୍କୁ ବିନା ମନ୍ତ୍ରରେ ଦଗ୍ଧ କରିବ । ଯେ ସକଳ ସପିଣ୍ଡ ବ୍ରାହ୍ମଣ, ଦହନ ବହନ ଓ ସ୍ପର୍ଶ କରିବେ । ୧୧ ।

ସେମାନେ ପ୍ରାଜାପତ୍ୟବ୍ରତର ଅନୁଷ୍ଠାନ କରିବେ । ପରେ ବ୍ରାହ୍ମଣଙ୍କର ଅନୁମତି ନେଇ ଦଗ୍ଧ ଅସ୍ଥି ସଂଗ୍ରହପୂର୍ବକ ଦୁଗ୍ଧରେ ପ୍ରକ୍ଷାଳନପୂର୍ବକ । ୧୨ ।

ପୁନର୍ଦହେତ୍ ସ୍ୱକୀୟୈରଗ୍ନୌ ମନ୍ତ୍ରେଣ ପୃଥକ୍ ପୃଥକ୍ ॥ ୧୩ ॥
ଆହିତାଗ୍ନିର୍ଦ୍ୱିଜଃକଶ୍ଚିତ୍ ପ୍ରବସନ୍ କାଳଚୋଦିତଃ ।
ଦେହନାଶମନୁପ୍ରାପ୍ତସ୍ତସ୍ୟାଗ୍ନିର୍ବସତେ ଗୃହେ ॥ ୧୪ ॥
ପ୍ରେତାଗ୍ନିହୋତ୍ରସଂସ୍କାରଃ ଶ୍ରୂୟତାମୃଷିସତ୍ତମାଃ ।
କୃଷ୍ଣାଜିନଂ ସମାସ୍ତୀର୍ଯ୍ୟ କୁଶୈସ୍ତୁ ପୁରୁଷାକୃତିଂ ॥ ୧୫ ॥
ଷଟ୍‌ଶତାନି ଶତଂ ଚୈବ ପଲାଶାନାଂ ଚ ବୃନ୍ତକଂ ।
ଚତ୍ୱାରିଂଶଚ୍ଛିରେ ଦଦ୍ୟାତ୍ ଷଷ୍ଟିଂ କଣ୍ଠେ ବିନିର୍ଦ୍ଦିଶେତ୍ ॥ ୧୬ ॥
ବାହୁଭ୍ୟାଂ ଚ ଶତଂ ଦଦ୍ୟାଦଙ୍ଗୁଲୀଷୁ ଦଶୈବତୁ ।
ଶତଂ ତୁରସି ସଂଦଦ୍ୟାତ୍ତ୍ରିଂଶଚ୍ଚୈବୋଦରେ ନ୍ୟସେତ୍ ॥ ୧୭ ॥
ଅଷ୍ଟୌ ବୃଷଣୟୋର୍ଦ୍ଦଦ୍ୟାତ୍ ପଞ୍ଚ ମେଢ୍ରେ ଚ ବିନ୍ୟସେତ୍ ।
ଏକବିଂଶତିମୂରୁଭ୍ୟାଂ ଜାନୁଜଂଘେ ଚ ବିଂଶତି ॥ ୧୮ ॥
ପାଦାଙ୍ଗୁଲ୍ୟାଃ ଶତାର୍ଦ୍ଧଂ ଚ ପତ୍ରାଣି ଚ ତଥା ନ୍ୟସେତ୍ ।
ଶମ୍ୟାଂ ଶିଶ୍ନେ ବିନିଃକ୍ଷିପ୍ୟ ଅରଣୀଂ ବୃଷଣେ ତଥା ॥ ୧୯ ॥

---

ପୁନର୍ବାର ସ୍ୱକୀୟ ଅଗ୍ନିରେ ମନ୍ତ୍ରପୂର୍ବକ ଦାହ କରିବେ । ୧୩ ।

ଯେବେ କୌଣସି ଆହିତାଗ୍ନି ବ୍ରାହ୍ମଣ ପ୍ରବାସଗମନପୂର୍ବକ କାଳ-ପ୍ରେରିତ ହୋଇ ମୃତ୍ୟୁମୁଖରେ ପତିତ ହୁଅନ୍ତି, ତାହା ହେଲେ ତାହାଙ୍କ ଗୃହରେ ଅଗ୍ନି ନିର୍ବାପିତ ହେବ । ୧୪ ।

ମହର୍ଷିଗଣ ! ସମ୍ପ୍ରତି ପ୍ରେତ ଅଗ୍ନିହୋତ୍ର ସଂସ୍କାର ବିବରଣ ବୋଲୁ-ଅଛୁଁ, ଶ୍ରବଣକରନ୍ତୁ । କୃଷ୍ଣାଜିନ-ଅସ୍ତୀର୍ଣ୍ଣ କରି ତଦୁପରି କୁଶନିର୍ମିତ ପୁରୁଷ ସଂସ୍ଥାପନ କରିବ । ୧୫ ।

ସପ୍ତଶତ ପଲାଶବୃନ୍ତ ସଂଗ୍ରହ କରି ମସ୍ତକରେ ଚତ୍ୱାରିଂଶତ୍, କଣ୍ଠରେ ଷଷ୍ଠିସଂଖ୍ୟକ ପ୍ରଦାନ କରିବ । ୧୬ ।

ବାହୁଦ୍ୱୟରେ ଏକଶତ ଅଙ୍ଗୁଳମାନଙ୍କରେ ଦଶସଂଖ୍ୟକ, ବକ୍ଷସ୍ଥଳରେ ଏକଶତ, ଉଦରରେ ତ୍ରିଂଶତ୍ । ୧୭ ।

ବୃଷଣଦ୍ୱୟରେ ଅଷ୍ଟସଂଖ୍ୟକ, ମେଢ୍ରରେ ପଞ୍ଚସଂଖ୍ୟକ ଉରୁଦ୍ୱୟରେ ବିଂଶତି, ଜାନୁ ଏବଂ ଜଂଘରେ ବିଂଶତି ସଂଖ୍ୟକ । ୧୮ ।

ଚରଣାଙ୍ଗୁଳିସମୁଦାୟରେ ପଞ୍ଚାଶତ୍ ପଲାଶବୃନ୍ତ ନିକ୍ଷେପ କରିବ । ଶିଶ୍ନରେ ଏବଂ ବୃଷଣରେ ଶମିକାଷ୍ଠନିର୍ମିତ ଅରଣି ସଂସ୍ଥାପନ କରିବ । ୧୯ ।

ଜୁହ୍ୱଂ ଦକ୍ଷିଣହସ୍ତେନ ବାମହସ୍ତେ ତଥୋପଭୃତ୍ ।
କଣ୍ଠେ ଚୈବୋଦୂଖଲଂ ଦଦ୍ୟାତ୍ ପୃଷ୍ଠେ ଚ ମୂଷଲଂ ତଥା ॥ ୨୦ ॥
ନ୍ୟସେଦ୍ୱକ୍ଷସି ଦୃଷଦଂ ତଣ୍ଡୁଲାଜ୍ୟତିଲାନ୍ମୁଖେ ।
ଶ୍ରୋତ୍ରେ ଚ ପ୍ରୋକ୍ଷଣୀଂ ଦଦ୍ୟାଦାଜ୍ୟସ୍ଥାଲୀଂ ଚ ଚକ୍ଷୁଷୋଃ ॥୨୧॥
କର୍ଣ୍ଣେ ନେତ୍ରେ ମୁଖେ ଘ୍ରାଣେ ହିରଣ୍ୟଶକଲଂ କ୍ଷିପେତ୍ ।
ଅଗ୍ନିହୋତ୍ରୋପକରଣଂ ଗାତ୍ରେ ଶେଷଂ ପ୍ରବାପୟେତ୍ ॥ ୨୨ ॥
ଅସୌ ସ୍ୱର୍ଗାୟ ଲୋକାୟ ସ୍ୱାହେତି ଚ ଘୃତାହୁତିଃ ।
ଦଦ୍ୟାତ୍ ପୁତ୍ରୋ ଽଥବା ଭ୍ରାତା ହ୍ୟନ୍ୟୋ ବାପି ସ୍ୱଧର୍ମିଣଃ ॥ ୨୩ ॥
ଯଥା ଦହନସଂସ୍କାରସ୍ତଥା କାର୍ଯ୍ୟଂ ବିଚକ୍ଷଣୈଃ ।
ଇଦୃଶଂ ତୁ ବିଧିଂ କୁର୍ଯ୍ୟାତ୍ ବ୍ରହ୍ମଲୋକେ ଗତିର୍ଭବେ ॥ ୨୪ ॥
ଯେ ଦହନ୍ତି ଦ୍ୱିଜାସ୍ତଂ ତୁ ତେ ଯାନ୍ତି ପରମାଂ ଗତିଂ ॥ ୨୫ ॥

---

ଦକ୍ଷିଣ ହସ୍ତରେ ଜୁହୂ, ଅର୍ଥାତ୍ ଯଜ୍ଞପାତ୍ର ବିଶେଷ ବାମହସ୍ତରେ ଉପଭୃତ୍, କଣ୍ଠରେ ଉଦୂଖଳ ପୃଷ୍ଠରେ ମୂଷଳ । ୨୦ ।

ବକ୍ଷସ୍ଥଳରେ ପ୍ରସ୍ତର, ମୁଖରେ ତଣ୍ଡୁଳ ଘୃତ ତିଳ, କର୍ଣ୍ଣରେ ପ୍ରୋକ୍ଷଣୀ ନେତ୍ରଦ୍ୱୟରେ ଆଜ୍ୟସ୍ଥାଳୀ ନିକ୍ଷେପ କରିବ । ୨୧ ।

କର୍ଣ୍ଣରେ ନେତ୍ରରେ ମୁଖରେ ଓ ନାସିକାରେ ସୁବର୍ଣ୍ଣଖଣ୍ଡ ପ୍ରଦାନ କରି ଅବଶିଷ୍ଟ ଅଗ୍ନିହୋତ୍ରୋପକରଣ ସମୁଦାୟ ଗାତ୍ରରେ ନିକ୍ଷେପ କରିବ । ୨୨ ।

ଅନନ୍ତର ପୁତ୍ର ଭ୍ରାତା ବା ଅନ୍ୟ କୌଣସି ସ୍ୱଧର୍ମୀ, "ଅସୌ ସ୍ୱର୍ଗାୟ ଲୋକାୟ ସ୍ୱାହା" ଏହି ମନ୍ତ୍ର ପାଠକରି ଘୃତାହୁତି ପ୍ରଦାନ କରିବ । ୨୩ ।

ଅନନ୍ତର ବିଚକ୍ଷଣବ୍ୟକ୍ତି ଦହନକାର୍ଯ୍ୟର ବିଧାନାନୁସାରେ ସମୁଦାୟ କାର୍ଯ୍ୟ କରିବ । ଇଦୃଶ ବିଧିବିହିତକାର୍ଯ୍ୟ କଲେ ବ୍ରହ୍ମଲୋକ ପ୍ରାପ୍ତ ହୁଏ, ସନ୍ଦେହ ନାହିଁ । ୨୪ ।

ଯେସକଳ ବ୍ରାହ୍ମଣ ଇଦୃଶ ବ୍ରାହ୍ମଣଙ୍କର ଦାହ କରନ୍ତି, ସେମାନେ ପରମଗତି ଲାଭ କରି ଥାନ୍ତି । ୨୫ ।

ଅନ୍ୟଥା କୁର୍ବତେ କର୍ମ୍ମ ସ୍ୱବୁଦ୍ଧିପ୍ରବୋଧିତାଃ ।
ଭବନ୍ତ୍ୟଳ୍ପାୟୁଷସ୍ତେବୈ ପତନ୍ତି ନରକେ ଧ୍ରୁବଂ । ୨୬ ।
ଇତି ପାରାଶରେ ଧର୍ମ୍ମଶାସ୍ତ୍ରେ ପଞ୍ଚମୋଽଧ୍ୟାୟଃ ।

---

ଷଷ୍ଠଅଧ୍ୟାୟଃ ।

ଅତଃପରଂ ପ୍ରବକ୍ଷ୍ୟାମି ପ୍ରାଣିହତ୍ୟାସୁ ନିଷ୍କୃତିଂ ।
ପରାଶରେଣ ପୂର୍ବୋକ୍ତାଂ ମନ୍ୱର୍ଥେଽପି ଚ ବିସ୍ତୃତାଂ । ୧ ।
ହଂସସାରସକ୍ରୌଞ୍ଚାଂଶ୍ଚ ଚକ୍ରବାକଂ ସକୁକ୍କୁଟଂ ।
ଜାଲପାଦାଂଶ୍ଚ ଶରଭମହୋରାତ୍ରେଣ ଶୁଦ୍ଧ୍ୟତି । ୨ ।
ବଲାକାଟିଟ୍ଟିଭାନାଂ ଚ ଶୁକପାରାବତାଦିନାଂ ।
ଅଟିନାଞ୍ଚ ବକାନାଞ୍ଚ ଶୁଦ୍ଧ୍ୟତେ ନକ୍ତଭୋଜନାତ୍ । ୩ ।
ଭାସକାକକପୋତାନାଂ ଶାରୀ-ତିତ୍ତିର-ଘାତକଃ ।
ଅନ୍ତର୍ଜଳେ ଉଭେ ସନ୍ଧ୍ୟେ ପ୍ରାଣାୟାମେନ ଶୁଦ୍ଧ୍ୟତି । ୪ ।

---

ଯେଉଁମାନେ ନିଜବୁଦ୍ଧି ଅନୁସାରେ ଯୁକ୍ତି ଅବଲମ୍ବନ କରି ଏହାର ଅନ୍ୟ ଆଚରଣରେ ପ୍ରବୃତ୍ତ ହୁଅନ୍ତି, ସେମାନେ ଅଳ୍ପାୟୁ ହୁଅନ୍ତି ଏବଂ ନରକକୁ ଗମନ କରନ୍ତି । ୨୬ ।

ଇତି ପରାଶର-ସଂହିତା ପଞ୍ଚମ ଅଧ୍ୟାୟ ।

---

ଅନନ୍ତର କିରୂପରେ ପ୍ରାଣିହତ୍ୟାପାତକରୁ ମୁକ୍ତିଲାଭ କରିବାକୁ ହୁଏ, ତାହା ବୋଲୁଅଛୁଁ । ମହର୍ଷି ମନୁ ବୋଲିବାକୁ ବିସ୍ମୃତ ହୋଇଥିଲେ ସତ୍ୟ, କିନ୍ତୁ ପୂର୍ବରେ ପରାଶର ଏହା ବ୍ୟକ୍ତ କରିଅଛନ୍ତି । ୧ ।

ହଂସ, ସାରସ, ବକ, ଚକ୍ରବାକ, କୁକ୍କୁଟ, ଜାଲପାଦ ନାମକ ପକ୍ଷି-ବିଶେଷ ଶରଭ, ଏହି ସମସ୍ତପ୍ରାଣି ହତ୍ୟା କଲେ ଏକଦିବାରାତ୍ରି ଉପବାସ କରି ଶୁଦ୍ଧିଲାଭ କରିପାରିବ । ୨ ।

ଯେବେ ବଲାକା, ଟିଟିଭ, ଶୁକ, ପାରାବତ, ଅଟି, ବକ ପ୍ରଭୃତି ପକ୍ଷି ବଧ କରନ୍ତି, ତାହା ହେଲେ ଦିବସରେ ଉପବାସପୂର୍ବକ ରାତ୍ରିରେ ଆହାର କଲେ ଶୁଦ୍ଧିଲାଭ କରିପାରିବ । ୩ ।

ଭାସ, କାକ, କପୋତ ଅର୍ଥାତ୍ ପାରାବତ ବିଶେଷ, ଶାରୀ, ତିତ୍ତିର ବିନାଶ କଲେ ପ୍ରାତଃକାଳରେ ଓ ସାୟଂକାଳରେ ଜଳମଧ୍ୟରେ ଦଣ୍ଡାୟ-ମାନ ହୋଇ ପ୍ରାଣାୟାମ କଲେ ଶୁଦ୍ଧିଲାଭ କରିପାରିବ । ୪ ।

ଗୃଧ୍ରଶ୍ୟେନଶିଖିକ୍ରୌଞ୍ଚସ୍ୱର୍ଣ୍ଣଚୂଡୋଲୂକନିପାତନେ ।
ଅପକ୍ୱାଶୀ ଦିନଂ ତିଷ୍ଠେତ୍ ତ୍ରିକାଲଂ ମାରୁତାଶନଃ । ୫ ।
ବଲ୍ଗୁଣୀ ଟିଟ୍ଟିଭାନାଞ୍ଚ କୋକିଲାନ୍ ଖଞ୍ଜରୀଟକାନ୍ ।
ଲାବକାରକ୍ତପାଦାଂଶ୍ଚ ଶୁଦ୍ଧ୍ୟନ୍ତେ ନକ୍ତଭୋଜନାତ୍ । ୬ ।
କାରଣ୍ଡବଚକୋରାଣାଂ ପିଙ୍ଗଳା କୁରରସ୍ୟ ଚ ।
ଭାରଦ୍ୱାଜାଦିକନ୍ତ୍ୱା ଚ ଶୁଦ୍ଧ୍ୟତେ ଶିବପୂଜନାତ୍ । ୭ ।
ଭେରୁଣ୍ଡଶ୍ୟେନଭାସଞ୍ଚ ପାରାବତକପିଞ୍ଜଲାନ୍ ।
ପକ୍ଷିଣାମେବ ସର୍ବେଷାମହୋରାତ୍ରେଣ ଶୁଦ୍ଧ୍ୟତି । ୮ ।
ହତ୍ୱା ନକୁଲମାର୍ଜ୍ଜାରସର୍ପାଜଗରଡୁଣ୍ଡୁଭାନ୍ ।
କୃଶରଂ ଭୋଜୟେଦ୍ ବିପ୍ରାନ୍ ଲୌହଦଣ୍ଡଂ ଚ ଦକ୍ଷିଣାଂ ॥ ୯
ଶଲ୍ଲକୀ ଶଶକା ଗୋଧା ମତ୍ସ୍ୟକୂର୍ମ୍ମାଭିଘାତନେ ।
ବୃନ୍ତାକଫଲଭୋକ୍ତା ଚ ହ୍ୟହୋରାତ୍ରେଣ ଶୁଦ୍ଧ୍ୟତି ॥ ୧୦ ॥

---

ଯେବେ କୌଣସି ବ୍ୟକ୍ତି ଗୃଧ୍ର, ଶ୍ୟେନ, ମୟୂର, କ୍ରୌଞ୍ଚ ପକ୍ଷୀ, ସ୍ୱର୍ଣ୍ଣଚୂଡକ, ଉଲୂକ ଏହି ସମୁଦାୟ ପ୍ରାଣୀଙ୍କି ବିନାଶ କରନ୍ତି, ଏକ ଦିନ ଅପକ୍ୱଦ୍ରବ୍ୟ ଭକ୍ଷଣ କରି ପରେ ତ୍ରିକାଳବାୟୁ ଭକ୍ଷଣ କରି ରହିବ । ୫ ।

ବଲ୍ଗୁଣୀ, ଟିଟ୍ଟିଭ, କୋକିଳ, ଖଞ୍ଜରୀଟ, ଲାବକ, ରକ୍ତପାଦ, ଏହି ସମୁଦାୟ ପ୍ରାଣି ବିନାଶ କଲେ ଯେବେ ଦିବସରେ ଉପବାସୀ ହୋଇଁ ରାତ୍ରିରେ ଅହାର କରନ୍ତି, ତାହା ହେଲେ ଶୁଦ୍ଧିଲାଭ କରିପାରନ୍ତି । ୬ ।

କାରଣ୍ଡବ, ଚକୋର, ପିଙ୍ଗଳ, କୁରର, ଭରଦ୍ୱାଜ ଏହି ସକଳ ପକ୍ଷି ବିନାଶ କଲେ ଶିବପୂଜା କରି ଶୁଦ୍ଧିଲାଭ କରିପାରିବେ । ୭ ।

ଯେବେ କୌଣସି ବ୍ୟକ୍ତି ଭେରୁଣ୍ଡ, ଶ୍ୟେନ, ଭାସ, ପାରାବତ, କପିଞ୍ଜଳ ଏହି ସମସ୍ତ ପକ୍ଷୀର ପ୍ରାଣ ନାଶ କରେ, ତାହା ହେଲେ ଅଥବା ଅନ୍ୟ ଯେଉଁ ପକ୍ଷୀ ବିନାଶ କଲେ ଏକ ଅହୋରାତ୍ର ଉପବାସ କରି ସେହି ପାପରୁ ମୁକ୍ତିଲାଭ କରିପାରିବ । ୮ ।

ଯେବେ କୌଣସି ବ୍ୟକ୍ତି ନକୁଳ, ମାର୍ଜ୍ଜାର, ସର୍ପ, ଅଜଗର, ଡୁଣ୍ଡୁଭ, କୃଶର, ଏହି ସମସ୍ତ ପ୍ରାଣିମଧ୍ୟରୁ କୌଣସି ପ୍ରାଣିକ ବିନାଶ କରେ ତାହା ହେଲେ ଲୌହଦଣ୍ଡ ଦକ୍ଷିଣା ପ୍ରଦାନପୂର୍ବକ ବ୍ରାହ୍ମଣଙ୍କୁ ତଲାନ୍ନ ଭୋଜନ କରାଇ ଶୁଦ୍ଧିଲାଭ କରିପାରିବ । ୯ ।

ଯେବେ କେହି ଶଲ୍ଲକୀ, ଶଶକ, ଗୋଧା, ମତ୍ସ୍ୟ, କୂର୍ମ୍ମ, ଏହି ସକଳ

ବୃକଜମ୍ବୁକଋକ୍ଷାଣାଂ ତରକ୍ଷୂଣାଂ ଚ ଘାତନେ ।
ତିଲପ୍ରସ୍ଥଂ ଦ୍ୱିଜେ ଦଦ୍ୟାଦ୍ୱାୟୁଭକ୍ଷୋ ଦିନତ୍ରୟଂ ॥ ୧୧ ॥
ଗଜଗବୟତୁରଙ୍ଗାଣାଂ ମହିଷୋଷ୍ଟ୍ରନିପାତନେ ।
ଶୁଦ୍ଧ୍ୟତେ ସପ୍ତରାତ୍ରେଣ ବିପ୍ରାଣାଂ ତର୍ପଣେନ ଚ ॥ ୧୨ ॥
ମୃଗଂ ରୁରୁଂ ବରାହଂ ଚ ଅଜ୍ଞାନାତ୍ ଯସ୍ତୁ ଘାତୟେତ୍ ।
ଅଫାଲକୃଷ୍ଟମଶ୍ନୀୟାଦହୋରାତ୍ରେଣ ଶୁଦ୍ଧ୍ୟତି ॥ ୧୩ ॥
ଏବଂ ଚତୁଷ୍ପଦାନାଂ ଚ ସର୍ବେଷାଂ ବନଚାରିଣାଂ ।
ଅହୋରାତ୍ରୋଷିତସ୍ତିଷ୍ଠେଜ୍ଜପନ୍ ବୈ ଜାତବେଦସଂ ॥ ୧୪ ॥
ଶିଳ୍ପିନଂ କାରୁକଂ ଶୂଦ୍ରଂ ସ୍ତ୍ରିୟଂ ବା ଯସ୍ତୁ ଘାତୟେତ୍ ।
ପ୍ରାଜାପତ୍ୟଦ୍ୱୟଂ କୁର୍ଯ୍ୟାତ୍ ବୃଷୈକାଦଶ ଦକ୍ଷିଣା ॥ ୧୫ ॥

---

ଜୀବମଧ୍ୟରୁ କୌଣସି ଜୀବକୁ ହତ୍ୟା କରେ, ତାହା ହେଲେ ଏକ ଦିବାରାତ୍ର ବାର୍ତ୍ତାକୁଫଳ ଭକ୍ଷଣ କରି .ରହିଲେ ପାପରୁ ମୁକ୍ତିଲାଭ କରିପାରିବ । ୧୦ ।

ଯେବେ କୌଣସି ବ୍ୟକ୍ତି ବୃକ ଜମ୍ବୁକ ଭଲ୍ଲୂକ ତରକ୍ଷୁ ଏହି ସମସ୍ତ-ଜନ୍ତୁମଧ୍ୟରୁ କୌଣସି ଜନ୍ତୁକୁ ବିନାଶ କରେ, ତାହା ହେଲେ ତିନଦିନ ବାୟୁଭକ୍ଷଣପୂର୍ବକ ରହି ବ୍ରାହ୍ମଣଙ୍କୁ ଏକପ୍ରସ୍ଥପରିମିତ ଅର୍ଥାତ୍ ଦୀର୍ଘରେ ପ୍ରସ୍ଥରେ ଏକହସ୍ତ ପରିମିତ ପାତ୍ରର ଚତୁଃଷଷ୍ଟିତମ ଅଂଶପରିମିତପାତ୍ରର ଏକପାତ୍ର ତିଲ ପ୍ରଦାନ କରି ଶୁଦ୍ଧିଲାଭ କରିପାରିବ । ୧୧ ।

ଯେବେ କୌଣସି ବ୍ୟକ୍ତି ଗଜ, ଗବୟ, ତୁରଙ୍ଗମ, ମହିଷ, ଉଷ୍ଟ୍ର ଏହି ସମୁଦାୟ ବୃହଦାକାର ଜୀବମଧ୍ୟରୁ କୌଣସି ଜୀବକୁ ବିନାଶ କରେ, ତାହା ହେଲେ ସପ୍ତରାତ୍ରି ଉପବାସପୂର୍ବକ ବ୍ରାହ୍ମଣମାନଙ୍କୁ ପରିତୁଷ୍ଟ କରାଇ ପାପରୁ ମୁକ୍ତିଲାଭ କରିପାରିବ । ୧୨ ।

ଯେବେ କୌଣସି ବ୍ୟକ୍ତି ମୃଗ, ରୁରୁ, ବରାହ ଏହି ସମୁଦାୟ ପ୍ରାଣି-ମଧ୍ୟରୁ କୌଣସି ପ୍ରାଣିକୁ ଅଜ୍ଞାନପୂର୍ବକ ବଧ କରେ, ତାହା ହେଲେ ସେ ଏକ ଦିବାରାତ୍ର ଲାଙ୍ଗଲଦ୍ୱାରା ଅକୃଷ୍ଟଶସ୍ୟ ଭକ୍ଷଣପୂର୍ବକ ରହି ପାପରୁ ନିସ୍ତାର ପାଇବ । ୧୩ ।

ଏହିପରି ବନଚର ଚତୁଷ୍ପଦ ଅନ୍ୟାନ୍ୟ ଜନ୍ତୁ ବଧ କଲେ ଏକ ଦିବାରାତ୍ର ଉପବାସ କରି ବହ୍ନିବୀଜ ଜପ କଲେ ଶୁଦ୍ଧିଲାଭ କରିପାରିବ । ୧୪ ।

ଯେ କୌଣସି ବ୍ୟକ୍ତି ଶିଳ୍ପଜୀବୀ, କାରୁକର, ଶୂଦ୍ର ଓ ନାରୀକୁ ବଧ

ବୈଶ୍ୟଂ ବା କ୍ଷତ୍ରିୟଂ ବାପି ନିର୍ଦ୍ଦୋଷମଭିଘାତୟେତ୍ ।
ସୋଽତିକୃଚ୍ଛ୍ରଦ୍ୱୟଂ କୁର୍ଯ୍ୟାଦ୍ଗୋବିଂଶଂ ଦକ୍ଷିଣାଂ ଦଦେତ୍ ॥ ୧୬ ॥
ବୈଶ୍ୟଂ ଶୂଦ୍ରଂ କ୍ରିୟାସକ୍ତଂ ବିକର୍ମସ୍ଥଂ ଦ୍ୱିଜୋତ୍ତମଂ ।
ହତ୍ୱା ଚାନ୍ଦ୍ରାୟଣଂ କୁର୍ଯ୍ୟାଦଦ୍ୟାଦ୍ଗୋତ୍ରିଂଶଦକ୍ଷିଣାଂ ॥ ୧୭ ॥
କ୍ଷତ୍ରିୟେଣାପି ବୈଶ୍ୟେନ ଶୂଦ୍ରେଣୈବେତରେଣବା ।
ଚଣ୍ଡାଲବଧସମ୍ପ୍ରାପ୍ତଃ କୃଚ୍ଛ୍ରାର୍ଦ୍ଧେନ ବିଶୁଦ୍ଧ୍ୟତି ॥ ୧୮ ॥
ଚୌରଃ ଶ୍ୱପାକଚଣ୍ଡାଲା ବିପ୍ରେଣାପି ହତା ଯଦି ।
ଅହୋରାତ୍ରୋପବାସେନ ପ୍ରାଣାୟାମେନ ଶୁଦ୍ଧ୍ୟତି ॥ ୧୯ ॥
ଶ୍ୱପାକଂ ବାପି ଚଣ୍ଡାଲଂ ବିପ୍ରଃ ସମ୍ଭାଷତେ ଯଦି ।
ଦ୍ୱିଜସମ୍ଭାଷଣଂ କୁର୍ଯ୍ୟାତ୍ ଗାୟତ୍ରୀଂ ତ ସକୃଜ୍ଜପେତ୍ ॥ ୨୦ ॥

---

କରେ ତାହା ହେଲେ ସେ ଦୁଇ ପ୍ରାଜାପତ୍ୟବ୍ରତ କରି ଏଗାରଗୋଟି ବୃଷ ଦକ୍ଷିଣା ଦେବ । ୧୫ ।

ଯେ ବ୍ୟକ୍ତି ବିନାପରାଧରେ କ୍ଷତ୍ରିୟ ବା ବୈଶ୍ୟକୁ ବିନାଶ କରିବ, ସେ ଦୁଇଗୋଟି ଅତିକୃଚ୍ଛ୍ର ବ୍ରତାନୁଷ୍ଠାନ କରି ବିଂଶତିସଂଖ୍ୟା ଗୋ ଦକ୍ଷିଣା ପ୍ରଦାନ କଲେ ପାପରୁ ମୁକ୍ତିଲାଭ କରିବ । ୧୬ ।

ଯେବେ କେହି ଯାଗକ୍ରିୟାସକ୍ତ ବୈଶ୍ୟ ଶୂଦ୍ର ଓ କ୍ରିୟାହୀନ ବ୍ରାହ୍ମଣଙ୍କୁ ବିନାଶ କରେ, ତାହା ହେଲେ ସେ ଚାନ୍ଦ୍ରାୟଣବ୍ରତ କରି ବ୍ରାହ୍ମଣଙ୍କୁ ତିରିଶଗୋଟି ଗୋରୁ ଦକ୍ଷିଣା ଦେଲେ ପାପରୁ ନିସ୍ତାର ପାଇବ । ୧୭ ।

ଯେବେ କ୍ଷତ୍ରିୟ, ବୈଶ୍ୟ ବା ଶୂଦ୍ର କୌଣସି ଚଣ୍ଡାଲକୁ ବଧ କରେ ତାହା ହେଲେ ଅର୍ଦ୍ଧକୃଚ୍ଛ୍ରବ୍ରତ ଦ୍ୱାରା ଶୁଦ୍ଧିଲାଭ କରିପାରିବ । ୧୮ ।

ଯେବେ କୌଣସି ବ୍ରାହ୍ମଣ ଚୋର, ଶ୍ୱପାକ ବା ଚଣ୍ଡାଲକୁ ବିନାଶ କରନ୍ତି ତାହା ହେଲେ ଏକଦିବାରାତ୍ର ଉପବାସପୂର୍ବକ ପ୍ରାଣାୟାମ କଲେ ପାପରୁ ମୁକ୍ତିଲାଭ କରି ପାରିବ । ୧୯ ।

ଯେବେ କୌଣସି ବ୍ରାହ୍ମଣ ଚଣ୍ଡାଳ ବା ଶ୍ୱପାକ ସହିତ ଆଳାପ କରନ୍ତି ତାହା ହେଲେ ସେ ବ୍ରାହ୍ମଣଙ୍କ ସହିତ ସମ୍ଭାଷଣପୂର୍ବକ ଏକଥର ଗାୟତ୍ରୀ ଜପ କଲେ ଶୁଦ୍ଧି ଲାଭ କରିପାରିବ । ୨୦ ।

ଶୃଗାଲୈଃ ସହସ୍ୱପ୍ନଂ ତୁ ତ୍ରିରାତ୍ରମୁପବାସୟେତ୍ ।
ଶୃଗାଲୈକପଥଂ ଗତ୍ୱା ଗାୟତ୍ରୀସ୍ମରଣାଚ୍ଛୁଚିଃ ॥ ୨୧ ॥
ଶୃଗାଲଦର୍ଶନେନୈବ ଆଦିତ୍ୟମବଲୋକୟେତ୍ ।
ଶୃଗାଲସ୍ପର୍ଶନେ ଚୈବ ସଚେଲଂ ସ୍ନାନମାଚରେତ୍ ॥ ୨୨ ॥
ଶୃଗାଲଖାତବାପୀଷୁ ପୀତ୍ୱା ସଲିଲମଗ୍ରଜଃ ।
ଅଜ୍ଞାନାଚ୍ଚୈବ ନକ୍ତେନ ହ୍ୟହୋରାତ୍ରେଣ ଶୁଦ୍ଧ୍ୟତି ॥ ୨୩ ॥
ଶୃଗାଲଭାଣ୍ଡସଂସୃଷ୍ଟଂ ପୀତ୍ୱା କୂପଗତଂ ଜଳଂ ।
ଗୋମୂତ୍ରଯାବକାହାରସ୍ତ୍ରିରାତ୍ରାଚ୍ଛୁଦ୍ଧିମାପ୍ନୁୟାତ୍ ॥ ୨୪ ॥
ଶୃଗାଲୋଦକଭାଣ୍ଡେ ତୁ ଅଜ୍ଞାନାତ୍ ପିବତେ ଜଳଂ ।
ତତ୍‌କ୍ଷଣାତ୍ କ୍ଷିପତେ ଯସ୍ତୁ ପ୍ରାଜାପତ୍ୟଂ ସମାଚରେତ୍ ॥ ୨୫ ॥

---

ଯେବେ କୌଣସି ବ୍ରାହ୍ମଣ ଶୃଗାଲ ସହିତ ଏକତ୍ର ଶୟନ କରନ୍ତି, ତାହା ହେଲେ ସେ ତ୍ରିରାତ୍ର ଉପବାସ କରି ପାପରୁ ମୁକ୍ତ ହେବେ । ଯେବେ କୌଣସି ବ୍ରାହ୍ମଣ ଶୃଗାଲ ସହିତରେ ଏକପଥରେ ଗମନ କରନ୍ତି, ତାହା ହେଲେ ସେ ଗାୟତ୍ରୀସ୍ମରଣପୂର୍ବକ ଶୁଦ୍ଧିଲାଭ କରିପାରିବେ ॥ ୨୧ ॥

ଯେବେ କୌଣସି ବ୍ରାହ୍ମଣ ଶୃଗାଲ ଦର୍ଶନ କରନ୍ତି, ତାହା ହେଲେ ସେ ଦିବାକର ଦର୍ଶନ କରି ଶୁଦ୍ଧ ହେବେ । ଯେବେ କେହି ଶୃଗାଲ ସ୍ପର୍ଶ କରନ୍ତି, ତାହା ହେଲେ ସେ ସେହିବସ୍ତ୍ରରେ ଜଳରେ ଅବଗାହନ କରି ସ୍ନାନ କଲେ ଶୁଦ୍ଧ ହେବେ ॥ ୨୨ ॥

ଯେବେ କୌଣସି ବ୍ରାହ୍ମଣ ନ ଜାଣି ଶୃଗାଲ-ଖାତ-ପୁଷ୍କରଣୀ ବା ବାପିକାରେ ଜଳପାନ କରନ୍ତି, ତାହା ହେଲେ ସେ ଦୁଇରାତ୍ରି ଓ ଏକଦିବସ ଉପବାସ କରି ଶୁଦ୍ଧିଲାଭ କରିପାରିବେ ॥ ୨୩ ॥

ଯେବେ କୌଣସି ବ୍ରାହ୍ମଣ ଶୃଗାଲର ଭାଣ୍ଡସ୍ପୃଷ୍ଟ କୂପସ୍ଥିତ ଜଳ ପାନ କରନ୍ତି, ତାହା ହେଲେ ତ୍ରିରାତ୍ର ଗୋମୂତ୍ରଯାବକ ଆହାରପୂର୍ବକ ରହି ଶୁଦ୍ଧିଲାଭ କରିପାରିବେ ॥ ୨୪ ॥

ଯେବେ କୌଣସି ବ୍ରାହ୍ମଣ ନ ଜାଣି ଶୃଗାଲଜଳପାତ୍ରରେ ଜଳପାନ କରନ୍ତି ଓ ଯେବେ ସେହି ଜଳ ତତ୍‌କ୍ଷଣାତ୍ ବମନ କରିପକାନ୍ତି, ତାହା ହେଲେ ପ୍ରାଜାପତ୍ୟବ୍ରତାଚରଣ କରି ଶୁଦ୍ଧିଲାଭ କରିପାରିବେ ॥ ୨୫ ॥

ଯଦି ନ କ୍ଷିପ୍ୟତେ ତୋୟଂ ଶରୀରେ ଯସ୍ୟ ଜୀର୍ଯ୍ୟତି ।
ପ୍ରାଜାପତ୍ୟଂ ନ ଦାତବ୍ୟଂ କୃଚ୍ଛ୍ରଂ ସାନ୍ତପନଂ ଚରେତ୍ ॥ ୨୬ ॥
ଚରେତ୍ ସାନ୍ତପନଂ ବିପ୍ରଃ ପ୍ରାଜାପତ୍ୟଂ ତୁ କ୍ଷତ୍ରିୟଃ ।
ତଦର୍ଦ୍ଧଂ ତୁ ଚରେଦ୍ ବୈଶ୍ୟଃ ପାଦଂ ଶୂଦ୍ରସ୍ୟ ଦାପୟେତ୍ ॥ ୨୭ ॥
ଭାଣ୍ଡସ୍ଥମନ୍ତ୍ୟଜାନାଂ ତୁ ଜଲଂ ଦଧି ପୟଃ ପିବେତ୍ ।
ବ୍ରାହ୍ମଣଃ କ୍ଷତ୍ରିୟୋ ବୈଶ୍ୟଃ ଶୂଦ୍ରଶ୍ଚୈବ ପ୍ରମାଦତଃ ॥ ୨୮ ॥
ବ୍ରହ୍ମକୂର୍ଚ୍ଚୋପବାସେନ ଦ୍ୱିଜାତୀନାଂ ତୁ ନିଷ୍କୃତିଃ ।
ଶୂଦ୍ରସ୍ୟ ଚୋପବାସେନ ତଥା ଦାନେନ ଶକ୍ତିତଃ ॥ ୨୯ ॥
ବ୍ରାହ୍ମଣୋ ଜ୍ଞାନତୋ ଭୁଂକ୍ତେ ଚଣ୍ଡାଲାନ୍ନଂ କଦାଚନ ।
ଗୋମୂତ୍ରଯାବକାହାରୋ ଦଶରାତ୍ରେଣ ଶୁଦ୍ଧ୍ୟତି ॥ ୩୦ ॥
ଏକୈକଂ ଗ୍ରାସମଶ୍ନୀୟାଦ୍‌ଗୋମୂତ୍ରଯାବକସ୍ୟ ଚ ।
ଦଶାହନିୟମସ୍ଥସ୍ୟ ବ୍ରତଂ ତତ୍ତୁ ବିନିର୍ଦ୍ଦିଶେତ୍ ॥ ୩୧ ।

---

ଯେବେ କୌଣସି ବ୍ରାହ୍ମଣ ଅଜ୍ଞାନତା ବଶତଃ ଚଣ୍ଡାଳଜଳପାତ୍ରରେ ଜଳପାନ କରନ୍ତି ଓ ଯେବେ ସେହି ଜଳ ବମନ ନ କରି ଜୀର୍ଣ୍ଣ କରି ପକାନ୍ତି, ତାହା ହେଲେ ସେ ପ୍ରାଜାପତ୍ୟବ୍ରତାନୁଷ୍ଠାନ ନ କରି କୃଚ୍ଛ୍ର-ସାନ୍ତପନବ୍ରତାଚରଣ କଲେ ଶୁଦ୍ଧି ଲାଭ କରିପାରିବେ ॥ ୨୬ ॥

ଯେ ସ୍ଥଳରେ ବ୍ରାହ୍ମଣ ସାନ୍ତପନବ୍ରତ କରିବେ, ସେ ସ୍ଥଳରେ କ୍ଷତ୍ରିୟ ପ୍ରାଜାପତ୍ୟବ୍ରତ, ଶୂଦ୍ର ଏକପାଦ ପ୍ରାଜାପତ୍ୟବ୍ରତାଚରଣ କଲେ ଶୁଦ୍ଧି ଲାଭ କରିପାରିବେ ॥ ୨୭ ॥

ଯେବେ ବ୍ରାହ୍ମଣ, କ୍ଷତ୍ରିୟ ବୈଶ୍ୟ ବା ଶୂଦ୍ର ପ୍ରମାଦବଶତଃ ଅନ୍ତ୍ୟଜ-ଜାତିର ଭାଣ୍ଡସ୍ଥିତ ଜଳ, ଦଧି ବା ଦୁଗ୍ଧ ପାନ କରନ୍ତି, ॥ ୨୮ ॥

ତାହା ହେଲେ ଦ୍ୱିଜଗଣ ଉପବାସପୂର୍ବକ ବ୍ରହ୍ମମନ୍ତ୍ର ବା କୂର୍ଚ୍ଚମନ୍ତ୍ର ଜପଦ୍ୱାରା ଏବଂ ଶୂଦ୍ରଗଣ ଉପବାସ ଓ ଯଥାଶକ୍ତି ଦାନଦ୍ୱାରା ଶୁଦ୍ଧିଲାଭ କରିପାରନ୍ତି ॥

ଯେବେ କୌଣସି ବ୍ରାହ୍ମଣ କେତେବେଳେ ଜ୍ଞାନ ପୂର୍ବକ ଚଣ୍ଡାଳାନ୍ନ ଭୋଜନ କରନ୍ତି, ତାହା ହେଲେ ସେ ଦଶରାତ୍ରି ଗୋମୂତ୍ରଯାବକ ଆହାର କରି ରହିଲେ ଶୁଦ୍ଧି ଲାଭ କରିପାରିବେ ॥ ୩୦ ॥

ଏହି ବ୍ୟକ୍ତିଙ୍କୁ ଦଶ ଦିବସ ଏହିରୂପ ନିୟମ ପ୍ରତିପାଳନ କରିବାକୁ ହେବ ଯେ, ପ୍ରତି ଦିବସ ଗୋମୂତ୍ରଯାବକର ଏକ ୨ ଗ୍ରାସ ଭକ୍ଷଣ କରି ବ୍ରତ ପୂର୍ଣ୍ଣ କରିବ ॥ ୩୧ ॥

.ଅବଜ୍ଞାତସ୍ତୁ ଶୃଗାଲଃ ଯତସ୍ତୁତସ୍ୟ ବେଶ୍ମନ ।
ବିଜ୍ଞାତେ ଉପବାସ୍ୟସ୍ୟ ଦ୍ୱିଜାଃ କୁର୍ବନ୍ତ୍ୟନୁଗ୍ରହଂ ॥ ୩୨ ॥
ଋଷିବକ୍ତ୍ରାଚ୍ଚ୍ୟୁତା ଧର୍ମ୍ମା ସ୍ତ୍ରାୟନ୍ତେ ବେଦପାବନାଃ ।
ପତନ୍ତୁ ମୁହ୍ୟମାନେଷୁ ଧର୍ମଜ୍ଞାଃ ପାପସଙ୍କଟାତ୍ ॥ ୩୩ ॥
ଦଧ୍ନା ଚ ସର୍ପିଷା ଚୈବ କ୍ଷୀରଗୋମୂତ୍ରଯାବକଂ ।
ଭୁଞ୍ଜୀତ ସହ ସର୍ବୈଶ୍ଚ ତ୍ରିସନ୍ଧ୍ୟମବଗାହନଂ ॥ ୩୪ ॥
ତ୍ର୍ୟହଂ ଭୁଞ୍ଜୀତ ଦଧ୍ନା ଚ ତ୍ର୍ୟହଂ ଭୁଞ୍ଜୀତ ସର୍ପିଷା ।
ତ୍ର୍ୟହଂ କ୍ଷୀରେଣ ଭୁଞ୍ଜୀତ ଏକୈକେନ ଦିନତ୍ରୟଂ ॥ ୩୫ ॥
ଭାବଦୁଷ୍ଟଂ ନ ଭୁଞ୍ଜୀୟାନ୍ନୋଚ୍ଛିଷ୍ଟଂ କୃମିଦୂଷିତଂ ।
ତ୍ରିପଳଂ ଦଧି ଦୁଗ୍ଧସ୍ୟ ପଳମେକଂ ତୁ ସର୍ପିଷଃ ॥ ୩୬ ॥
ଭସ୍ମନା ତୁ ଭବେଚ୍ଛୁଦ୍ଧିରୁଭୟୋ ସ୍ତାମ୍ରକାଂସ୍ୟୟୋଃ ।
ଜଳଶୌଚେନ ବସ୍ତ୍ରାଣାଂ ପରିତ୍ୟାଗେନ ମୃଣ୍ମୟଂ ॥ ୩୭ ॥

---

ଯେବେ କୌଣସି ବ୍ରାହ୍ମଣଙ୍କ ଗୃହରେ ଶୃଗାଳ ଅପରିଜ୍ଞାତରୂପରେ ବାସ କରନ୍ତି ଏବଂ ଯେବେ ପରେ ତାହା ଜାଣିପାରନ୍ତି, ତାହା ହେଲେ ବ୍ରାହ୍ମଣମାନେ ବକ୍ଷ୍ୟମାଣ ଉପବାସ କରି ଅନୁଗ୍ରହ ପୂର୍ବକ ତାହାଙ୍କୁ ମୁକ୍ତ କରିଦେବେ । ୩୨ ।

ଋଷିମୁଖଶ୍ରୁତ ବେଦପାବନଧର୍ମ୍ମ, ସମସ୍ତଙ୍କୁ ରକ୍ଷା କରିଅଛି, ଏହି ଧର୍ମ୍ମଜ୍ଞ ବ୍ୟକ୍ତିମାନେ ପତିତବ୍ୟକ୍ତିଙ୍କୁ ପାପସଙ୍କଟରୁ ଉଦ୍ଧାର କରନ୍ତି ।୩୩।

ଉପବାସ ଏହିଯେ ବ୍ରାହ୍ମଣମାନଙ୍କ ସହିତ ଏକତ୍ର ହୋଇ ଦଧି- ସହିତ, ଘୃତସହିତ ଓ ଦୁଗ୍ଧସହିତ ଗୋମୂତ୍ର ଏବଂ ତଣ୍ଡୁଳାନ୍ନ ଆହାର କରିବେ, ତ୍ରିସନ୍ଧ୍ୟା ସ୍ନାନ କରିବେ । ୩୪ ।

ପରନ୍ତୁ ତିନଦିନ ଦୁଗ୍ଧସହିତ, ତିନଦିନ ଘୃତସହିତ ଓ ତିନଦିନ ଦଧିସହିତ, ଏହିରୂପରେ ଏକ ୨ ଦ୍ରବ୍ୟସହିତ ତିନଦିନଲେଖାଏଁ ଗୋମୂତ୍ରଯୁକ୍ତ ତଣ୍ଡୁଳାନ୍ନ ଆହାର କରିବାକୁ ହେବ । ୩୫ ।

ଭାବଦୁଷ୍ଟ କୃମିଦୂଷିତ ବା ଉଚ୍ଛିଷ୍ଟଦ୍ରବ୍ୟ ଭୋଜନ କରିବେ ନାହିଁ । ଦଧି ଓ ଦୁଗ୍ଧ ତିନପଳ ଏବଂ ଘୃତ ଏକପଳ ଆହାର କରିବେ ॥

ସେହି ଭବନସ୍ଥିତ ତାମ୍ରପାତ୍ର ଓ କାଂସ୍ୟପାତ୍ର ଭସ୍ମଦ୍ୱାରା ମାର୍ଜିତ କଲେ ଶୁଦ୍ଧ ହେବ । ବସ୍ତ୍ର ସମୁଦାୟ ଜଳଦ୍ୱାରା ଧୌତକରି ନେବାକୁ ହେବ । ମୃଣ୍ମୟପାତ୍ର ସମୁଦାୟ ପରିତ୍ୟାଗ କରିବାକୁ ହେବ । ୩୭ ।

କୁସୁମ୍ଭ ଗୁଡ଼ କାର୍ପାସ ଲବଣଂ ତୈଲ ସର୍ପିଷୀ ।
ଦ୍ୱାରେ କୃତ୍ୱା ତୁ ଧାନ୍ୟାନି ଗୃହେ ଦଦ୍ୟାଦ୍ଧୁତାଶନଂ ॥ ୩୮ ॥
ଏବଂ ଶୁଦ୍ଧ ସ୍ତତଃ ପଶ୍ଚାତ୍ କୁର୍ଯ୍ୟାଦ୍ ବ୍ରାହ୍ମଣଭୋଜନଂ ।
ତ୍ରିଂଶଦ୍ଗାଂଚ ବୃଷଂ ଚୈକଂ ଦଦ୍ୟାଦ୍ୱିପ୍ରେଷୁ ଦକ୍ଷିଣାଂ ॥ ୩୯ ॥
ପୁନର୍ଲେପନସ୍ନାନେନ ହୋମଜାପ୍ୟେନ ଶୁଦ୍ଧ୍ୟତି ।
ଆଧାରେଣ ଚ ବିପ୍ରାଣାଂ ଭୂମିଦୋଷୋ ନ ବିଦ୍ୟତେ ॥ ୪୦ ॥
ରଜକୀ ଚର୍ମ୍ମକାରୀଚ ଲୁବ୍ଧକୀ ଚ ପୁକ୍କସୀ ।
ଚତୁର୍ବର୍ଣ୍ଣସ୍ୟ ଗେହେ ଯସ୍ୟ ତ୍ୱଜ୍ଞାନାଦଧିତିଷ୍ଠତି ॥ ୪୧ ॥
ଜ୍ଞାତ୍ୱା ତୁ ନିଷ୍କୃତିଂ କୁର୍ଯ୍ୟାତ୍ ପୂର୍ବୋକ୍ତସ୍ୟାର୍ଦ୍ଧମେବଚ ।
ଗୃହଦାହଂ ନ କୁର୍ବୀତାପ୍ୟନ୍ୟତ୍ ସର୍ବଂ ଚ କାରୟେତ୍ ॥ ୪୨ ॥
ଗୃହସ୍ୟାଭ୍ୟନ୍ତରେ ଗଚ୍ଛେଚ୍ଛୃଗାଲୋ ଯସ୍ୟ କସ୍ୟଚିତ୍ ।
ତସ୍ମାଦ୍ଗୃହାଦ୍ ବହିଃସ୍ତସ୍ୟ ଗୃହଭାଣ୍ଡାନି ବର୍ଜୟେତ୍ ॥ ୪୩ ॥

---

ଅନନ୍ତର ଗୃହଦ୍ୱାରେ କୁସୁମ୍ଭ ଗୁଡ଼ କାର୍ପାସ ଲବଣ ତୈଲ ଘୃତ ଧାନ୍ୟ, ଏହି ସମୁଦାୟ ସଂସ୍ଥାପନ କରି ଗୃହରେ ଅଗ୍ନିପ୍ରଦାନପୂର୍ବକ ଜ୍ୱଳାଇଦେବ । ୩୮ ।

ଏହି ରୂପରେ ଶୁଦ୍ଧିଲାଭ କରି ପଶ୍ଚାତ୍ ବ୍ରାହ୍ମଣଭୋଜନ କରାଇବାକୁ ହେବ । ପରେ ତିରିଶଗୋଟି ଗାଭୀ ଏକଗୋଟି ବୃଷ ଦକ୍ଷିଣା ପ୍ରଦାନ ହେବ । ୩୯ ।

ଅନନ୍ତର ସେହିସ୍ଥାନ ପୁନର୍ବାର ବିଲେପନଦ୍ୱାରା, ହୋମଦ୍ୱାରା, ଜପଦ୍ୱାରା ଶୁଦ୍ଧ ହେବ । ବ୍ରାହ୍ମଣମାନଙ୍କର ଅଦ୍ୱାରାର୍ଥ ଭୂମିଦୋଷ ଘଟେ ନାହିଁ । ୪୦ ।

ଯେବେ ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ବା ଶୂଦ୍ରଙ୍କଗୃହରେ ଅପରଜ୍ଞାତ-ରୂପେ ରଜକୀ, ଚର୍ମ୍ମକାରୀ, ଲୁବ୍ଧକୀ ବା ପୁକ୍କସୀ ଅବସ୍ଥାନ କରେ, ତାହା-ହେଲେ । ୪୧ ।

ଯେତେବେଳେ ଜାଣିପାରିବ, ତେତେବେଳେ ପୂର୍ବୋକ୍ତ କାର୍ଯ୍ୟ ସକଳ ଅର୍ଦ୍ଧ ଅନୁଷ୍ଠାନ କରିବ । ପରନ୍ତୁ ଗୃହଦଗ୍ଧ କରିବାକୁ ହେବ ନାହିଁ । ୪୨ ।

ଯାହାଙ୍କ ଗୃହମଧ୍ୟରେ ଶୃଗାଳ ପ୍ରବେଶକରିବ, ସେହି ବ୍ୟକ୍ତି ଗୃହର ସକଳ ଭାଣ୍ଡ ବାହାରକୁ ପକାଇ ଦେବ । ୪୩ ।

ରସପୂର୍ଣ୍ଣଂ ତୁ ଯଦ୍ଭାଣ୍ଡଂ ନ ତ୍ୟଜେତ କଦାଚନ ।
ଗୋରସେନ ତୁ ସମିଶ୍ରୈ ର୍ଜ୍ଜଲୈଃ ପ୍ରୋକ୍ଷେତ୍ତୁ ସମନ୍ତତଃ ॥ ୪୪ ॥
ବ୍ରାହ୍ମଣସ୍ୟ ବ୍ରଣଦ୍ୱାରେ ପୂୟଶୋଣିତସମ୍ଭବେ ।
କୃମିରୁତ୍ପଦ୍ୟତେ ଯସ୍ୟ ପ୍ରାୟଶ୍ଚିତ୍ତଂ କଥଂ ଭବେତ୍ । ୪୫ ।
ଗବାଂ ମୂତ୍ରପୁରୀଷେଣ ଦଧ୍ନା କ୍ଷୀରେଣ ସର୍ପିଷା ।
ତ୍ର୍ୟହଂ ସ୍ନାତ୍ୱା ଚ ପୀତ୍ୱା ଚ କୃମିଦୁଷ୍ଟଃ ଶୁଚିର୍ଭବେତ୍ । ୪୬ ।
କ୍ଷତ୍ରିୟୋ ଽପି ସୁବର୍ଣ୍ଣସ୍ୟ ପଞ୍ଚମାଷାନ୍ ପ୍ରଦାପୟେତ୍ ।
ଗୋଦକ୍ଷିଣାଂ ତୁ ବୈଶ୍ୟସ୍ୟାପ୍ୟୁପବାସଂ ବିନିର୍ଦ୍ଦିଶେତ୍ । ୪୭ ।
ଶୂଦ୍ରାଣାଂ ନୋପବାସଃ ସ୍ୟାଚ୍ଛୂଦ୍ରୋ ଦାନେନ ଶୁଦ୍ଧ୍ୟତି ।
ବ୍ରାହ୍ମଣାଂସ୍ତୁ ନମସ୍କୃତ୍ୟ ପଞ୍ଚଗବ୍ୟେନ ଶୁଦ୍ଧ୍ୟତି । ୪୮ ।
ଅଚ୍ଛିଦ୍ରମିତି ଯଦ୍ବାକ୍ୟଂ ବଦନ୍ତି କ୍ଷିତିଦେବତାଃ ।
ପ୍ରଣମ୍ୟ ଶିରସା ଧାର୍ଯ୍ୟମଗ୍ନିଷ୍ଟୋମଫଳଂ ହି ତତ୍ । ୪୯ ।

---

ଯେଉଁ ଭାଣ୍ଡରେ ତୈଳ ମଧୁ ସୁରା ଘୃତପ୍ରଭୃତି ରସଦ୍ରବ୍ୟ ଥିବ, ତାହା କେତେବେଳେ ପରିତ୍ୟାଗ କରିବ ନାହିଁ । ସେହି ସକଳଭାଣ୍ଡ ଗୋରସମିଶ୍ରିତ ଜଳଦ୍ୱାରା ସର୍ବାଂଶରେ ପ୍ରୋକ୍ଷିତ କରିନେବ । ୪୪ ।

ବ୍ରାହ୍ମଣଙ୍କ ବ୍ରଣସ୍ଥାନରେ ପୂୟରକ୍ତମଧ୍ୟରେ ଯେବେ କୃମି ଉତ୍ପନ୍ନ ହୁଏ, ତାହା ହେଲେ ତାହାର କିପରି ପ୍ରାୟଶ୍ଚିତ୍ତ କରିବାକୁ ହେବ, ବୋଲୁଅଛନ୍ତି ॥ ୪୫

ତିନଦିନ ଦଧି, ଦୁଗ୍ଧ, ଘୃତ ଓ ଗାଈର ମୂତ୍ର, ପୁରୀଷଦ୍ୱାରା ସ୍ନାନ କଲେ ଓ ତିନଦିନ ସେହିସମସ୍ତ ଦ୍ରବ୍ୟ ପାନକଲେ କୃମିଦୂଷିତବ୍ରାହ୍ମଣ ଶୁଦ୍ଧିଲାଭ କରିପାରେ । ୪୬ ।

ଇଦୃଶସ୍ଥଳରେ କ୍ଷତ୍ରିୟ ଉକ୍ତପ୍ରକାର ପ୍ରାୟଶ୍ଚିତ୍ତ ନ କରି ପାଞ୍ଚମଷା ସୁବର୍ଣ୍ଣ ଦାନ କରିବ, ବୈଶ୍ୟଜାତି ଉପବାସ କରି ଗୋ ଦକ୍ଷିଣା ପ୍ରଦାନ କରିବ । ୪୭ ।

ଇଦୃଶସ୍ଥଳରେ ଶୂଦ୍ରଙ୍କର ଉପବାସ ନାହିଁ, ଶୂଦ୍ରମାନେ ପଞ୍ଚଗବ୍ୟ-ପାନପୂର୍ବକ ବ୍ରାହ୍ମଣଙ୍କୁ ନମସ୍କାର କରି ଏବଂ ଦାନକରି ଶୁଦ୍ଧିଲାଭ କରି-ପାରିବେ । ୪୮ ।

ବ୍ରାହ୍ମଣମାନେ ଯେ ଅଚ୍ଛିଦ୍ରମସ୍ତୁ ଏହିବାକ୍ୟ ବୋଲିବେ, ତାହା ପ୍ରଣାମପୂର୍ବକ ମସ୍ତକରେ ଧାରଣ କରିବାକୁ ହେବ । ତାହା ହେଲେ ଅଗ୍ନି-ଷ୍ଟୋମର ଫଳଲାଭ ହେବ । ୪୯ ।

ବ୍ୟାଧିବ୍ୟସନନ ଶ୍ରାନ୍ତେ ଦୁର୍ଭିକ୍ଷେ ଡ଼ାମରେ ତଥା
ଉପବାସୋ ବ୍ରତୋ ହୋମୋ ଦ୍ୱିଜସମ୍ପାଦିତାନ ବା । ୫୦ ।
ଅଥବା ବ୍ରାହ୍ମଣା ସ୍ତୁଷ୍ଟାଃ ସ୍ୱୟଂ କୁର୍ବନ୍ତ୍ୟନୁଗ୍ରହଂ ।
ସର୍ବଧର୍ମ୍ମ ମବାପ୍ନୋତି ଦ୍ୱିଜୈଃ ସମ୍ବର୍ଦ୍ଧିତାଶିଷା । ୫୧ ।
ଦୁର୍ବଲେ ଽନୁଗ୍ରହଃ କାର୍ଯ୍ୟ ସ୍ତଥାବୈ ବାଲବୃଦ୍ଧୟୋଃ ।
ଅତୋଽନ୍ୟଥା ଭବେଦ୍ଦୋଷ ସ୍ତସ୍ମା ନ୍ନାନୁଗ୍ରହଃ ସ୍ମୃତଃ । ୫୨ ।
ସ୍ନେହାଦ୍ୱା ଯଦବା ଲୋଭାଦ୍ଭୟାଦଜ୍ଞାନତୋଽପିବା ।
କୁର୍ବନ୍ତ୍ୟନୁଗ୍ରହଂ ଯେ ବୈ ତତ୍ପାପଂ ତେଷୁ ଗଚ୍ଛତି । ୫୩ ।
ଶରୀରସ୍ୟାତ୍ୟୟେ ପ୍ରାପ୍ତେ ବଦନ୍ତି ନିୟମଂ ତୁ ଯେ ।
ମହତ୍କାର୍ଯ୍ୟୋପରୋଧେନ ନ ସ୍ୱସ୍ଥସ୍ୟ କଦାଚନ । ୫୪ ।
ସ୍ୱସ୍ଥସ୍ୟ ମୂଢ଼ାଃ କୁର୍ବନ୍ତି ନିୟମଂ ତୁ ବଦନ୍ତି ଯେ ।
ତେ ତସ୍ୟ ବିଘ୍ନକର୍ତ୍ତାରଃ ପତନ୍ତି ନରକେ ଽଶୁଚୌ । ୫୫ ।

---

ଶୂଦ୍ରଙ୍କର ପୀଡ଼ା, ବ୍ୟସନ, ଶ୍ରାନ୍ତି, ଦୁର୍ଭିକ୍ଷ ଓ ଡ଼ାମର ଅର୍ଥାତ୍ ଉତ୍ପାତ ପ୍ରଭୃତି ଉପସ୍ଥିତ ହେଲେ ସେ ବ୍ରାହ୍ମଣଙ୍କଦ୍ୱାରା ଉପବାସ ବ୍ରତ ହୋମପ୍ରଭୃତି ସମ୍ପାଦନ କରାଇବେ । ୫୦ ।

ଅଥବା ବ୍ରାହ୍ମଣମାନେ ପରିତୁଷ୍ଟ ହୋଇ ସ୍ୱୟଂ ଅନୁଗ୍ରହ କରିପାରିବେ, ବ୍ରାହ୍ମଣଙ୍କ ଆଶୀର୍ବାଦଦ୍ୱାରା ସକଳ ଧର୍ମ୍ମ ଲାଭ ହୁଏ । ୫୧ ।

ବ୍ରାହ୍ମଣଙ୍କର କର୍ତ୍ତବ୍ୟ ଏହି ଯେ ସେମାନେ ଦୁର୍ବଳ ପ୍ରତି, ବାଳକପ୍ରତି, ଓ ବୃଦ୍ଧପ୍ରତି ଅନୁଗ୍ରହ କରିବେ, ଏମାନେ ଅନ୍ୟଥାଚରଣ କଲେ ଦୋଷ ହେବ, ସୁତରାଂ ତାଦୃଶ ଅନୁଗ୍ରହ କୌଣସି ଫଳଦାୟକ ହେବ ନାହିଁ । ୫୨ ।

ଯେ ସକଳ ବ୍ରାହ୍ମଣ ସ୍ନେହ ହେତୁ, ଲୋଭହେତୁ ଭୟହେତୁ, ବା ଅଜ୍ଞାନ-ବଶତଃ ଅନୁପଯୁକ୍ତପାତ୍ରରେ ଅନୁଗ୍ରହ କରିବେ, ସେମାନେ ଯାହାଙ୍କ ପ୍ରତି ଅନୁଗ୍ରହ କରିବେ, ତାହାଙ୍କ ପାପ ସେମାନଙ୍କ ଶରୀରରେ ସଞ୍ଚାରିତ ହେବ । ୫୩ ।

ଯେ ସମସ୍ତ ବ୍ରାହ୍ମଣ ଶରୀରନାଶର ସମ୍ଭାବନାସ୍ଥଳରେ ପ୍ରାୟଶ୍ଚିତ୍ତର ବିଧାନ କରନ୍ତି, ଯେ ସକଳ ବ୍ରାହ୍ମଣ ମହତ୍କାର୍ଯ୍ୟ ଅନୁରୋଧରେ ସୁସ୍ଥପ୍ରତି ନିୟମ ପାଳନ କରିବାକୁ ନିଷେଧ କରି କ୍ଷମା କରନ୍ତି । ୫୪ ।

ଯେ ସକଳ ଧର୍ମ୍ମଶାସ୍ତ୍ରାନଭିଜ୍ଞ ମୂଢ଼ବ୍ୟକ୍ତି ସୁସ୍ଥଶରୀର ବ୍ୟକ୍ତିର ନିୟମ ପାଳନ କରାନ୍ତି ବା ଯେ ନିୟମପାଳନର ବିଧାନ ଦିଅନ୍ତି ସେମାନେ

ସ ଏବ ନଯ୍ୟୂମସ୍ତ୍ୟାଜ୍ୟୋ ବ୍ରାହ୍ମଣଂ ଯୋ ଽବମନ୍ୟତେ ।
ବୃଥା ତସ୍ୟୋପବାସଃ ସ୍ୟା ନ ସ ପୁଣ୍ୟେନ ଯୁଜ୍ୟତେ ॥ ୫୬ ॥
ସ ଏବ ନଯ୍ୟୂମୋ ଗ୍ରାହ୍ୟୋ ଯଂ ଯଂ କୋଽପି ବଦେଦ୍ଦ୍ୱିଜଃ ।
କୁର୍ଯ୍ୟାଦ୍ବାକ୍ୟଂ ଦ୍ୱିଜାନାଂ ଚ ଅନ୍ୟଥା ବ୍ରହ୍ମହା ଭବେତ୍ ॥ ୫୭ ॥
ଉପବାସୋ ବ୍ରତଂ ଚୈବ ସ୍ନାନଂ ତୀର୍ଥଂ ଜପ-ସ୍ତପଃ ।
ବିପ୍ରୈଃ ସମ୍ପାଦିତଂ ଯସ୍ୟ ସମ୍ପନ୍ନଂ ତସ୍ୟ ତଦ୍ଭବେତ୍ ॥ ୫୮ ॥
ବ୍ରତଚ୍ଛିଦ୍ରଂ ତପଶ୍ଛିଦ୍ରଂ ଯଚ୍ଛିଦ୍ରଂ ଯଜ୍ଞକର୍ମଣି ।
ସର୍ବଂ ଭବତି ନଶ୍ଛିଦ୍ରଂ ବ୍ରାହ୍ମଣୈରୁପପାଦିତଂ ॥ ୫୯ ॥
ବ୍ରାହ୍ମଣା ଜଙ୍ଗମଂ ତୀର୍ଥଂ ନର୍ମ୍ମଲଂ ସର୍ବକାମଧୁକ୍ ।
ତେଷାଂ ବାକ୍ୟୋଦକେନୈବ ଶୁଦ୍ଧ୍ୟନ୍ତି ମଳନା ଜନାଃ ॥ ୬୦ ॥
ବ୍ରାହ୍ମଣା ଯାନ ଭାଷନ୍ତେ ଭାଷନ୍ତେ ତାନ ଦେବତାଃ ।
ସର୍ବଦେବମୟା ବିପ୍ରା ନ ତଦ୍ବଚନମନ୍ୟଥା ॥ ୬୧ ॥

---

ସମସ୍ତେ ପ୍ରକୃତ ପ୍ରାୟଶ୍ଚିତ୍ତର ବିଧିକର୍ତ୍ତା, ସୁତରାଂ ସେମାନେ ଅପବିତ୍ର ନରକରେ ପତିତ ହୁଅନ୍ତି । ୫୫ ।

ଯେ ବ୍ୟକ୍ତି ବ୍ରାହ୍ମଣଙ୍କୁ ଅବଜ୍ଞା କରନ୍ତି, ତାହାଙ୍କର ବ୍ରତନିୟମ ହୋଇପାରେ ନାହିଁ ତାହାଙ୍କ ଉପବାସ ବୃଥା ହୁଏ, ଏବଂ ସେ ବ୍ୟକ୍ତିଙ୍କର ପୁଣ୍ୟୋପାର୍ଜ୍ଜନ ହୁଅଇ ନାହିଁ । ୫୬ ।

କୌଣସି ବ୍ରାହ୍ମଣ ଯେପ୍ରକାର ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଦେବେ, ସେହି ବ୍ୟବସ୍ଥା ଶିରୋଧାର୍ଯ୍ୟ କରି ତଦନୁସାରେ କାର୍ଯ୍ୟ କରିବାକୁ ହେବ, ଯେ ବ୍ୟକ୍ତି ବ୍ରାହ୍ମଣଙ୍କ ବାକ୍ୟର ଅନ୍ୟଥାଚରଣ କରିବ, ସେ ବ୍ରହ୍ମହତ୍ୟା ପାତକରେ ପାତକୀ ହେବ । ୫୭ ।

ବ୍ରାହ୍ମଣ ଯାହାନିମିତ୍ତ ଉପବାସ ବ୍ରତ, ସ୍ନାନ, ତୀର୍ଥଦର୍ଶନ, ଜପ, ତପସ୍ୟା ପ୍ରଭୃତି କରିବେ, ତାହା ସୁସମ୍ପନ୍ନ ହେବ । ୫୮ ।

ବ୍ରାହ୍ମଣଙ୍କଦ୍ୱାରା କାର୍ଯ୍ୟ ସମ୍ପାଦିତ ହେଲେ ବ୍ରତଚ୍ଛିଦ୍ର ତପଶ୍ଛିଦ୍ର ଓ ଯଜ୍ଞଚ୍ଛିଦ୍ର କଦାପି ଘଟେ ନାହିଁ, ସକଳ ଅଚ୍ଛିଦ୍ର ହୋଇଯାଏ । ୫୯ ।

ବ୍ରାହ୍ମଣମାନେ ଜଳରହିତ ସର୍ବକାମନାପରିପୂରକ ଜଙ୍ଗମତୀର୍ଥସ୍ୱରୂପ, ସେମାନଙ୍କର ବାକ୍ୟରୂପ ସଲିଳଦ୍ୱାରା ପାପମଳନବ୍ୟକ୍ତିମାନେ ପବିତ୍ର ହୁଅନ୍ତି । ୬୦ ।

ବ୍ରାହ୍ମଣଙ୍କ ମୁଖରୁ ଯେ ବାକ୍ୟ ନିର୍ଗତ ହୁଏ, ତାହା ଦେବତାମାନ-

ଅନ୍ନାଦେଃ କୀଟସଂଯୁକ୍ତେ ମକ୍ଷିକା-କୀଟଦୂଷିତେ ।
ଅନ୍ତରା ସମ୍ପ୍ରୋକ୍ଷ୍ୟାପଦନ୍ନଂ ଭସ୍ମନା ସ୍ପୃଶେତ୍ ॥ ୭୦ ॥
ଭୁଞ୍ଜାନୋ ହି ଯଦା ବିପ୍ରଃ ପାଦଂ ହସ୍ତେନ ସଂସ୍ପୃଶେତ୍ ।
ଉଚ୍ଛିଷ୍ଟଂ ହି ସ ର୍ବେ ଭୁଂକ୍ତେ ଯୋ ଭୁଂକ୍ତେ ମୁକ୍ତଭାଜନେ ॥୭୩ ॥
ପାଦୁକାସ୍ଥୋ ନ ଭୁଞ୍ଜୀତ ପର୍ଯ୍ୟଙ୍କେ ସସ୍ଥିତୋ ଽପିବା ।
ଶ୍ୱନା ଶୃଗାଳଦୃଷ୍ଟୋ ବା ଭୋଜନଂ ପରିବର୍ଜୟେତ୍ ॥ ୭୪ ॥
ପକ୍ୱାନ୍ନଂ ଚ ନଷିଦ୍ଧଂ ଯଦନ୍ନଶୁଦ୍ଧିସ୍ତଥୈବଚ ।
ଯଥା ପରାଶରେଣୋକ୍ତଂ ତଥୈବାହଂ ବଦାମି ବଃ ॥ ୭୫ ॥
ମିତଂ ଦ୍ରୋଣାଢ଼କସ୍ୟାନ୍ନଂ କାକ-ଶ୍ୱାନୋପଘାତିତଂ ।
କେନେଦଂ ଶୁଧ୍ୟତେ ଚାନ୍ନଂ ବ୍ରାହ୍ମଣେଭ୍ୟୋ ନିବେଦୟେତ୍ ॥ ୭୬ ॥

---

ଙ୍କର କଥିତ ବାକ୍ୟ, କାରଣ ବ୍ରାହ୍ମଣମାନେ ସର୍ବଦେବମୟ, ସୁତରାଂ ସେମାନଙ୍କ ବାକ୍ୟ ଅନ୍ୟଥା ହୋଇପାରେ ନାହିଁ । ୭୧ ।

ଯେବେ ଅନ୍ନପ୍ରଭୃତିରେ କୀଟ ଥାଏ ବା ଅନ୍ନାଦି ମକ୍ଷିକା ଓ କୀଟାଦିଦ୍ୱାରା ଦୂଷିତ ହୁଏ, ତାହା ହେଲେ ଭୋଜନକାଳରେ ସେହି ଅନ୍ନ ଜଳଦ୍ୱାରା ପ୍ରୋକ୍ଷିତ କରି ସେଥିରେ ଭସ୍ମ ସ୍ପର୍ଶ କରାଇବ । ୭୨ ।

ଯେବେ ବ୍ରାହ୍ମଣ ଭୋଜନ କରିବା ସମୟରେ ଚରଣରେ ବାମହସ୍ତ ପ୍ରଦାନ କରିଥାନ୍ତି ଓ ଯେବେ ଭୋଜନପାତ୍ରରେ ବାମହସ୍ତ ଦେଇ ଭୋଜନ କରନ୍ତି ତାହା ହେଲେ ତାହାଙ୍କର ଉଚ୍ଛିଷ୍ଟ ଭୋଜନ କରିବାର ହୁଏ ।୭୩।

ଚରଣରେ ପାଦୁକାଯୁକ୍ତ ହୋଇ ବା ପଲ୍ୟଙ୍କରେ ଉପବେଶନ କରି ଭୋଜନ କରିବ ନାହିଁ । ଯେବେ ଭୋଜନକାଳରେ କୁକ୍କୁର-କର୍ତ୍ତୃକ ବା ଶୃଗାଳ-କର୍ତ୍ତୃକ ଦୃଷ୍ଟ ହୋଏ, ତାହା ହେଲେ ଭୋଜନ ପରିତ୍ୟାଗ କରିବ । ୭୪ ।

ଯେଉଁ ଅନ୍ନ ଶୁଦ୍ଧ ଓ ଅଶୁଦ୍ଧ, ତାହା ପରାଶରଙ୍କ ବଚନାନୁସାରେ ଆମ୍ଭେ ତୁମ୍ଭମାନଙ୍କ ନିକଟରେ ବୋଲୁଅଛୁଁ । ୭୫ ।

ଦ୍ରୋଣପରିମିତ ଅନ୍ନ ବା ଆଢ଼କପରିମିତ ଅନ୍ନ ଯେବେ କାକଦ୍ୱାରା ବା କୁକ୍କୁରଦ୍ୱାରା ଉପହତ ହୁଏ, ତାହା ହେଲେ ତାହା କିରୂପରେ ଶୁଦ୍ଧ ହୋଇ ପାରେ, ତହିଁର ବିଧାନ ବ୍ରାହ୍ମଣମାନଙ୍କ ନିକଟରେ ଜିଜ୍ଞାସା କରିବ । ୭୬ ।

କାକଶ୍ୱାନାବଲୀଢ଼ଂ ତୁ ଦ୍ରୋଣାନ୍ନଂ ନ ପରିତ୍ୟଜେତ୍ ।
ବେଦବେଦାଙ୍ଗବିଦ୍ୱିପ୍ରୈର୍ଦ୍ଧର୍ମଶାସ୍ତ୍ରାନୁପାଳକୈଃ ॥ ୬୭ ॥
ପ୍ରସ୍ଥ ଦ୍ୱାତ୍ରିଂଶତଦ୍ଦ୍ରୋଣ ସ୍ମୃତୋ ଦ୍ୱିପ୍ରସ୍ଥ ଆଢ଼କଃ ।
ତତୋ ଦ୍ରୋଣାଢ଼କସ୍ୟାନ୍ନଂ ଶ୍ରୁତି ସ୍ମୃତି ବିଦୋ ବିଦୁଃ ॥ ୬୮ ॥
କାକଶ୍ୱାନାବଲୀଢ଼ଂ ତୁ ଗବା ଘ୍ରାତଂ ଖରେଣ ବା ।
ସ୍ୱଳ୍ପମନ୍ନଂ ତ୍ୟଜେଦ୍ବିପ୍ରଃ ଶୁଦ୍ଧିର୍ଦ୍ଦ୍ରୋଣାଢ଼କେ ଭବେତ୍ ॥ ୬୯ ॥
ଅନ୍ନସ୍ୟୋଦ୍ଧୃତ୍ୟ ତନ୍ମାତ୍ରଂ ଯଚ୍ଚ ନୋପହତଂ ଭବେତ୍ ।
ସୁବର୍ଣ୍ଣୋଦକ ମଭ୍ୟୁକ୍ଷ୍ୟ ହୁତାଶେନୈବ ତାପୟେତ୍ ॥ ୭୦ ॥

---

ଧର୍ମଶାସ୍ତ୍ରବିହିତ ଅନୁରକ୍ତ ବେଦ-ବେଦାଙ୍ଗ-ବିତ୍ ବ୍ରାହ୍ମଣଗଣ, କଦାପି ଦେବେ ଯେ, କାକୋଚ୍ଛିଷ୍ଟ ବା କୁକ୍କୁରୋଚ୍ଛିଷ୍ଟ ଦ୍ରୋଣାନ୍ନ ବା ଆଢ଼କାନ୍ନ ପରିତ୍ୟାଗ କରିବ ନାହିଁ । ୬୭ ।

ବତିଶପ୍ରସ୍ଥରେ ଏକ ଦ୍ରୋଣ ହୁଏ, ଦୁଇପ୍ରସ୍ଥରେ ଏକ ଆଢ଼କ ହୋଇଥାଏ । ଶ୍ରୁତି ସ୍ମୃତି ବିଶାରଦ ପଣ୍ଡିତଗଣ ଏହି ବତିଶପ୍ରସ୍ଥ ପରିମିତ ଅନ୍ନକୁ ଦ୍ରୋଣାନ୍ନ ଓ ଦୁଇପ୍ରସ୍ଥ ପରିମିତ ଅନ୍ନକୁ ଆଢ଼କାନ୍ନ * ବୋଲି ଥାନ୍ତି । ୬୮ ।

ଯେ ଅନ୍ନରେ କାକ ବା କୁକ୍କୁର ମୁଖ ଦେଇଥିବ, ଯେ ଅନ୍ନ ଗୋ ବା ଗର୍ଦ୍ଦଭ କର୍ତ୍ତୃକ ଆଘ୍ରାତ ହୋଇଥିବ, ତାହା ଯେବେ ଅଳ୍ପ ପରିମିତ ହୁଏ, ତାହା ହେଲେ ତାହା ପରିତ୍ୟାଗ କରିବ । ସେହି ଅନ୍ନ ଦ୍ରୋଣାନ୍ନ ବା ଆଢ଼କାନ୍ନ ହେଲେ ଅଶୁଚି ଓ ପରିତ୍ୟାଗ ଯୋଗ୍ୟ ହେବ ନାହିଁ । ୬୯ ।

ପରନ୍ତୁ ସେହି ଅନ୍ନର ଯେଉଁସ୍ଥାନରେ କାକ ବା କୁକ୍କୁର ମୁଖ ଦେଇଥିବ । ତହିଁରୁ କିଛି ପରିତ୍ୟାଗ କରି ଯେଉଁ ଅଂଶରେ ମୁଖ ଦେଇ ନ ଥିବ, ବା ଯେ ଅଂଶ ଦୂଷିତ ହୋଇ ନ ଥିବ, ତାହା ସୁବର୍ଣ୍ଣସ୍ପୃଷ୍ଟ ସଲିଳଦ୍ୱାରା ପ୍ରୋକ୍ଷିତ କରି ଅଗ୍ନିଦ୍ୱାରା ଉତ୍ତପ୍ତ କରି ନେବ । ୭୦ ।

---

* ଆଲମଗୀର ସାହା ନାମକ ସମ୍ରାଟ ଏହିପରି ପରିମାଣର ବିଶେଷ ପରିବର୍ତ୍ତନ କରି ଏହିରୂପ ନିୟମ ପ୍ରଚଳିତ କରନ୍ତି ଯେ, ସର୍ବତ୍ର ଏକହାତ ଦୀର୍ଘରେ ଏକହାତ ଉଚ୍ଚରେ ଏକହାତ ପରିମାଣକୁ ମାଗଧୀୟ ଶାସ୍ତ୍ର ବୋଲନ୍ତି । ସେହିର ଷୋଡ଼ଶାଂଶରେ ଏକ ଦ୍ରୋଣ ହୁଏ । ଦ୍ରୋଣର ଚତୁର୍ଥାଂଶରେ ଏକ ଆଢ଼କ ହୁଏ । ଆଢ଼କର ଅପଭ୍ରଂଶ ଅଡା ହୋଇଅଛି, ଆଢ଼କର ଚତୁର୍ଥାଂଶକୁ ପ୍ରସ୍ଥ ବୋଲି ପ୍ରସ୍ଥର ଚତୁର୍ଥାଂଶ କୁଡ଼ବ ଶବ୍ଦରେ ନିର୍ଦ୍ଦିଷ୍ଟ ହୋଇଥାଏ ।

ହୁତାଶନେନ ସଂସୃଷ୍ଟଂ ସୁବର୍ଣ୍ଣସଲିଳେନ ଚ ।
ବିପ୍ରାଣାଂ ବ୍ରହ୍ମଘୋଷେଣ ଭୋଜ୍ୟଂ ଭବତି ଭକ୍ଷଣାତ୍ ॥ ୭୧ ॥
ଇତି ପାରାଶରେ ଧର୍ମଶାସ୍ତ୍ରେ ଷଷ୍ଠୋଽଧ୍ୟାୟଃ ।

---

ସପ୍ତମ ଅଧ୍ୟାୟ ।

ଅଥାତୋ ଦ୍ରବ୍ୟଶୁଦ୍ଧିଃ ପରାଶରବଚୋ ଯଥା ।
ଦାରବାଣାଂ ତୁ ପାତ୍ରାଣାଂ ତକ୍ଷଣାଚ୍ଛୁଦ୍ଧିରିଷ୍ୟତେ ॥ ୧ ॥
ମାର୍ଜ୍ଜନା ଦ୍ୟଜ୍ଞପାତ୍ରାଣାଂ ପାଣିନା ଯଜ୍ଞକର୍ମ୍ମଣି ।
ଚମସାନାଂ ଗ୍ରହାଣାଂ ଚ ଶୁଦ୍ଧିଃ ପ୍ରକ୍ଷାଳନେନ ତୁ ॥ ୨ ॥
ଚରୂଣାଂ ସ୍ରୁକ୍ ସ୍ରୁବାଣାଂ ଚ ଶୁଦ୍ଧିରୁଷ୍ଣେନ ବାରିଣା ।
ଭସ୍ମନା ଶୁଦ୍ଧ୍ୟତେ କାଂସ୍ୟଂ ତାମ୍ରମମ୍ଳେନ ଶୁଦ୍ଧ୍ୟତି ॥ ୩ ॥
ରଜସା ଶୁଦ୍ଧ୍ୟତେ ନାରୀ ବିକଳଂ ଯା ନ ଗଚ୍ଛତି ।
ନଦୀ ବେଗେନ ଶୁଦ୍ଧ୍ୟେତ ଲେପୋ ଯଦି ନ ଦୃଶ୍ୟତେ ॥ ୪ ॥

---

ସେହି ଅନ୍ନ ବ୍ରାହ୍ମଣବାକ୍ୟଦ୍ୱାରା ସୁବର୍ଣ୍ଣସଲିଳ ସ୍ପର୍ଶଦ୍ୱାରା ଓ ଅଗ୍ନି-ଉତ୍ତାପଦ୍ୱାରା ଶୋଧିତ ହେଲେ ସମସ୍ତେ ତାହା ଅନାୟାସରେ ଭୋଜନ କରି ପାରିବେ । ୭୧ ।

ଇତି ପରାଶର ସଂହିତା ଷଷ୍ଠାଧ୍ୟାୟ ସମାପ୍ତ ।

---

ଅତଃପର ପରାଶରଙ୍କ ବଚନାନୁସାରେ ଦ୍ରବ୍ୟଶୋଧନ କହୁଅଛୁଁ, କାଷ୍ଠନିର୍ମିତ ପାତ୍ର ଚାଞ୍ଛି ପକାଇଲେ ଶୁଦ୍ଧ ହୁଏ । ୧ ।

ଯଜ୍ଞସ୍ଥଳରେ ଯଜ୍ଞପାତ୍ର ହସ୍ତଦ୍ୱାରା ମାର୍ଜ୍ଜନ କଲେ ଶୁଦ୍ଧ ହେବ । ଗ୍ରହମସ ଓ କଣ୍ଠା ଜଳରେ ପ୍ରକ୍ଷାଳନ କଲେ ଶୁଦ୍ଧ ହୁଏ । ୨ ।

ଚରୁ ସମୟରେ ସ୍ରୁକ୍ସ୍ରୁବ ପ୍ରଭୃତି ଯଜ୍ଞପାତ୍ର ସକଳ ଉଷ୍ଣ ସଲିଳରେ ଧୌତ କଲେ ଶୁଦ୍ଧ ହୁଅଇ । କାଂସ୍ୟପାତ୍ର ଭସ୍ମଦ୍ୱାରା ମାର୍ଜ୍ଜିତ କଲେ ପବିତ୍ର ହୁଏ । ଅମ୍ଳଦ୍ୱାରା ମାର୍ଜ୍ଜିତ କଲେ ତାମ୍ରପାତ୍ର ଶୁଦ୍ଧ ହୁଏ । ୩ ।

ଯେବେ ପରପୁରୁଷସମ୍ଭୋଗଦ୍ୱାରା କୌଣସି ଅଙ୍ଗ ବୈକଲ୍ୟ ହୋଇ ନ ଥାଏ ଅର୍ଥାତ୍ ଯେବେ ନାରୀର ସକଳ ଅଙ୍ଗ ପୂର୍ବବତ୍ ଅକ୍ଷୟ ଥାଏ, ତାହା ହେଲେ ପୁନର୍ବାର ରଜସ୍ୱଳା ହେଲେ ପରପୁରୁଷସଂସର୍ଗଦୂଷିତା ନାରୀ ଶୁଦ୍ଧ ହୁଏ । ଯେବେ ମଳ ଭୂମିରେ ସଂଲଗ୍ନ ନ ଥାଏ ତାହା ହେଲେ ନଦୀବେଗଦ୍ୱାରା ତାହା ପରିଶୁଦ୍ଧ ହୁଏ । ୪ ।

ବାପୀକୂପତଡ଼ାଗେଷୁ ଦୂଷିତେଷୁ କଥଞ୍ଚନ ।
ଉଦ୍ଧୃତ୍ୟ ବୈ ଘଟଶତଂ ପଞ୍ଚଗବ୍ୟେନ ଶୁଦ୍ଧ୍ୟତି ॥ ୫ ॥
ଅଷ୍ଟବର୍ଷା ଭବେଦ୍ଗୌରୀ ନବବର୍ଷା ତୁ ରୋହିଣୀ ।
ଦଶବର୍ଷା ଭବେତ୍ କନ୍ୟା ଅତ ଊର୍ଦ୍ଧ୍ୱଂ ରଜସ୍ୱଲା ॥ ୬ ॥
ପ୍ରାପ୍ତେ ତୁ ଦ୍ୱାଦଶେ ବର୍ଷେ ଯଃ କନ୍ୟାଂ ନ ପ୍ରଯଚ୍ଛତି ।
ମାସେ ମାସି ରଜସ୍ତସ୍ୟାଃ ପିବନ୍ତି ପିତରଃ ସ୍ୱୟଂ ॥ ୭ ॥
ମାତା ଚୈବ ପିତା ଚୈବ ଜ୍ୟେଷ୍ଠଭ୍ରାତା ତଥୈବଚ ।
ତ୍ରୟସ୍ତେ ନରକଂ ଯାନ୍ତି ଦୃଷ୍ଟ୍ୱା କନ୍ୟାଂ ରଜସ୍ୱଲାଂ ॥ ୮ ॥
ଯସ୍ତାଂ ସମୁଦ୍ୱହେତ୍ କନ୍ୟାଂ ବ୍ରାହ୍ମଣୋ ଽଜ୍ଞାନମୋହିତଃ ।
ଅସମ୍ଭାଷ୍ୟୋ ହ୍ୟପାଂକ୍ତେୟଃ ସ ବିପ୍ରୋ ବୃଷଲୀପତିଃ ॥ ୯ ॥
ଯଃ କରୋତ୍ୟେକରାତ୍ରେଣ ବୃଷଲୀସେବନଂ ଦ୍ୱିଜଃ ।
ସ ଭୈକ୍ଷ୍ୟଭୁକ୍ ଜପନ୍ନିତ୍ୟଂ ତ୍ରିଭିର୍ବର୍ଷୈର୍ବିଶୁଦ୍ଧ୍ୟତି ॥ ୧୦ ॥

---

ଯେବେ ବାପୀ, କୂପ ତଡ଼ାଗ ପ୍ରଭୃତିର ଜଳ କୌଣସିକାରଣରେ ଅପବିତ୍ର ହୁଏ ତାହା ହେଲେ ସେସ୍ଥାନରୁ ଏକଶତ କଳସ ଜଳ ଉଠାଇ ଦେଇ ତହିଁରେ ପଞ୍ଚଗବ୍ୟ ନିକ୍ଷେପ କଲେ ତାହା ପବିତ୍ର ହେବ । ୫ ।

ଅଷ୍ଟମବର୍ଷବୟସ୍କା କନ୍ୟାକୁ ଗୌରୀ, ନବମବର୍ଷବୟସ୍କା କନ୍ୟାକୁ ରୋହିଣୀ, ଦଶମ ବର୍ଷବୟସ୍କାକନ୍ୟାକୁ କନ୍ୟା ବୋଲାଯାଏ । ଦଶମବର୍ଷ ପର କନ୍ୟା ରଜସ୍ୱଲା ହୋଇଥାଏ । ୬ ।

କନ୍ୟାର ଦ୍ୱାଦଶବର୍ଷବୟଃକ୍ରମ ହେଲେ, ଯେ ବ୍ୟକ୍ତି କନ୍ୟା ସମ୍ପ୍ରଦାନ ନ କରେ ତାହାଙ୍କ ପିତୃଗଣ ମାସେ୨ ସେହିକନ୍ୟାର ମାସିକ ଅର୍ତ୍ତବ ପାନ କରିଥାନ୍ତି । ୭ ।

କନ୍ୟା ଯେବେ ଅବିବାହିତାବସ୍ଥାରେ ରଜସ୍ୱଲା ହୁଏ, ତାହା ହେଲେ ତାହାକୁ ଦେଖିବା ମାତ୍ର ତାହାଙ୍କ ମାତା ପିତା ଓ ଜ୍ୟେଷ୍ଠଭ୍ରାତା ତିନିହେଁ ନରକଗାମୀ ହୁଅନ୍ତି । ୮ ।

ଯେଉଁ ବ୍ରାହ୍ମଣ ଅଜ୍ଞାନଦ୍ୱାରା ମୋହିତ ହୋଇ ସେହି ରଜସ୍ୱଲା କନ୍ୟାକୁ ବିବାହ କରନ୍ତି, ସେହି ବ୍ୟକ୍ତି ଶୂଦ୍ରାପତି ସଦୃଶ, ଅର୍ଥାତ୍ ବୃଷଲୀ-ପତି ତାହାଙ୍କ ସହିତ କେହି ଏକପଂକ୍ତିରେ ଭୋଜନ କରିବେ ନାହିଁ ଏବ କେହି ତାହାଙ୍କ ସହିତ ସମ୍ଭାଷଣ ମଧ କରିବେ ନାହିଁ । ୯ ।

ଯେଉଁ ବ୍ରାହ୍ମଣ ଏକରାତ୍ରି ମାତ୍ର ବୃଷଲୀଗମନ କରିବ, ସେ ତିନିବର୍ଷ ଭିକ୍ଷାନ୍ନ ଭୋଜନ ପୂର୍ବକ ନିତ୍ୟ ଜପ କଲେ ଶୁଦ୍ଧିଲାଭ କରିପାରିବ । ୧୦ ।

ଅସ୍ତଂ ଗତେ ଯଦା ସୂର୍ଯ୍ୟେ ଚଣ୍ଡାଳଂ ପତିତଂ ସ୍ତ୍ରିୟଂ ।
ସୂତିକାଂ ସ୍ପୃଶତଶ୍ଚୈବ କଥଂ ଶୁଦ୍ଧିର୍ବିଧୀୟତେ ॥ ୧୧ ॥
ଜାତବେଦଂ ସୁବର୍ଣ୍ଣଂ ଚ ସୋମମାର୍ଗଂ ବିଲୋକ୍ୟ ଚ ।
ବ୍ରାହ୍ମଣାନୁଗତଶ୍ଚୈବ ସ୍ନାନଂ କୃତ୍ୱା ବିଶୁଧ୍ୟତି ॥ ୧୨ ॥
ସ୍ପୃଷ୍ଟ୍ୱା ରଜସ୍ୱଲାନ୍ୟୋନ୍ୟଂ ବ୍ରାହ୍ମଣୀଂ ବ୍ରାହ୍ମଣୀ ତଥା ।
ତାବତ୍ତିଷ୍ଠେନ୍ନିରାହାରା ତ୍ରିରାତ୍ରେଣୈବ ଶୁଧ୍ୟତି ॥ ୧୩ ॥
ସ୍ପୃଷ୍ଟ୍ୱା ରଜସ୍ୱଲାନ୍ୟୋନ୍ୟଂ ବ୍ରାହ୍ମଣୀ କ୍ଷତ୍ରିୟା ତଥା ।
ଅର୍ଦ୍ଧକୃଚ୍ଛ୍ରଂ ଚରେତ୍ ପୂର୍ବା ପାଦମେକମନନ୍ତରା ॥ ୧୪ ॥
ସ୍ପୃଷ୍ଟ୍ୱା ରଜସ୍ୱଲାନ୍ୟୋନ୍ୟଂ ବ୍ରାହ୍ମଣୀ ବୈଶ୍ୟଜା ତଥା ।
ପାଦୋନଂ ଚୈବ ପୂର୍ବାସ୍ୟାଃ ପରସ୍ୟାଃ କୃଚ୍ଛ୍ରପାଦକଂ ॥ ୧୫ ॥

---

ସୂର୍ଯ୍ୟ ଅସ୍ତ ଗମନ କଲେ ଯେବେ କୌଣସି ବ୍ରାହ୍ମଣ ଚଣ୍ଡାଳକୁ, ପତିତବ୍ୟକ୍ତିକୁ ଓ ସୂତିକାସ୍ତ୍ରୀକୁ ସ୍ପର୍ଶ କରନ୍ତି ତାହା ହେଲେ କପରି ଶୁଦ୍ଧିଲାଭ କରିବେ, ତାହା ବୋଲୁଅଛନ୍ତି ।୧୧।

ଅଗ୍ନି ସୁବର୍ଣ୍ଣ ଓ ଚନ୍ଦ୍ର ବା ଚନ୍ଦ୍ରଗମନ ପଥ ଅବଲୋକନ ପୂର୍ବକ ବ୍ରାହ୍ମଣଙ୍କର ଅନୁଗତ୍ୟ କରି ଅର୍ଥାତ୍ ଅନୁମତି ନେଇ ସ୍ନାନ କଲେ ଶୁଦ୍ଧିଲାଭ କରିପାରିବ ।୧୨।

ଦୁଇଜଣ ବ୍ରାହ୍ମଣକନ୍ୟା ରଜସ୍ୱଲା ହୋଇ ଯେବେ ପରସ୍ପର ପରସ୍ପରକୁ ସ୍ପର୍ଶ କରନ୍ତି, ତାହା ହେଲେ ତିନିରାତ୍ର ନିରାହାରରେ ରହି ଶୁଦ୍ଧିଲାଭ କରିବେ ।୧୩।

ଯେବେ ବ୍ରାହ୍ମଣକନ୍ୟା ଓ କ୍ଷତ୍ରିୟକନ୍ୟା ଉଭୟରେ ରଜସ୍ୱଲା ହୋଇ ପରସ୍ପର ପରସ୍ପରକୁ ସ୍ପର୍ଶ କରନ୍ତି, ତାହା ହେଲେ ବ୍ରାହ୍ମଣୀ ଅର୍ଦ୍ଧକୃଚ୍ଛ୍ରବ୍ରତ କରିବ, କ୍ଷତ୍ରିୟଦୁହିତା ଚତୁର୍ଥାଂଶ କୃଚ୍ଛ୍ରବ୍ରତ କରି ଶୁଦ୍ଧିଲାଭ କରିବ ।୧୪।

ଯେବେ ବ୍ରାହ୍ମଣକନ୍ୟା ଓ ବୈଶ୍ୟକନ୍ୟା ଉଭୟରେ ରଜସ୍ୱଲା ହୋଇ ପରସ୍ପର ପରସ୍ପରକୁ ସ୍ପର୍ଶ କରନ୍ତି ତାହା ହେଲେ ବ୍ରାହ୍ମଣତନୟା ପାଦୋନ କୃଚ୍ଛ୍ରବ୍ରତ ଓ ବୈଶ୍ୟତନୟା ଚତୁର୍ଥାଂଶକୃଚ୍ଛ୍ରବ୍ରତ କରି ଶୁଦ୍ଧିଲାଭ କରିବ ।୧୫।

ସ୍ପୃଷ୍ଟା ରଜସ୍ୱଲାଯୋଗଂ ବ୍ରାହ୍ମଣୀଂ ଶୂଦ୍ରଜା ତଥା ।
କୃଚ୍ଛ୍ରେଣ ଶୁଦ୍ଧ୍ୟତେ ପୂର୍ବା ଶୂଦ୍ରା ଦାନେନ ଶୁଦ୍ଧ୍ୟତି ॥ ୧୬ ॥
ସ୍ନାତା ରଜସ୍ୱଲା ଯା ତୁ ଚତୁର୍ଥେଽହନି ଶୁଦ୍ଧ୍ୟତି ।
କୁର୍ଯ୍ୟାଦ୍ରଜୋନିବୃତ୍ତୌ ତୁ ଦୈବପିତ୍ର୍ୟାଦି କର୍ମ୍ମ ଚ ॥ ୧୭ ॥
ରୋଗେଣ ଯଦ୍ରଜଃ ସ୍ତ୍ରୀଣାମନ୍ୱହଂ ତୁ ପ୍ରବର୍ତ୍ତତେ ।
ନାଶୁଚିଃ ସା ତତସ୍ତେନ ତତ୍ସ୍ୟାଦ୍‌ବୈକାଲିକଂ ମତଂ ॥ ୧୮ ॥
ପ୍ରଥମେଽହନି ଚଣ୍ଡାଳୀ ଦ୍ୱିତୀୟେ ବ୍ରହ୍ମଘାତିନୀ ।
ତୃତୀୟେ ରଜକୀ ପ୍ରୋକ୍ତା ଚତୁର୍ଥେଽହନି ଶୁଦ୍ଧ୍ୟତି ॥ ୧୯ ॥
ଆତୁରେ ସ୍ନାନ ଉତ୍ପନ୍ନେ ଦଶକୃତ୍ୱୋ ହ୍ୟନାତୁରଃ ।
ସ୍ନାତ୍ୱା ସ୍ନାତ୍ୱା ସ୍ପୃଶେଦେନଂ ତତଃ ଶୁଦ୍ଧ୍ୟେତ୍ସ ଆତୁରଃ ॥ ୨୦ ॥

---

ଯେବେ ବ୍ରାହ୍ମଣକନ୍ୟା ଓ ଶୂଦ୍ରକନ୍ୟା ଉଭୟରେ ରଜସ୍ୱଳା ହୋଇ ପରସ୍ପର ପରସ୍ପରକୁ ସ୍ପର୍ଶ କରନ୍ତି ତାହା ହେଲେ ବ୍ରାହ୍ମଣକନ୍ୟା ଗୋଟିଏ ସ୍ୱର୍ଣ୍ଣ କୃଚ୍ଛ୍ରବ୍ରତଦ୍ୱାରା ଓ ଶୂଦ୍ରକନ୍ୟା ଦାନଦ୍ୱାରା ଶୁଦ୍ଧିଲାଭ କରିପାରିବେ । ୧୬

ରଜସ୍ୱଲାରମଣୀ ଚତୁର୍ଥଦିବସରେ ସ୍ନାନ କରି ଶୁଦ୍ଧିଲାଭ କରିବ, ପରନ୍ତୁ ରଜୋନିବୃତ୍ତି ହେଲେ ଦୈବକର୍ମ୍ମ ପୈତ୍ର୍ୟକର୍ମ୍ମ ସମୁଦାୟ କରିପାରିବ । ୧୭ ।

ଯେଉଁ ରମଣୀର ରୋଗବଶତଃ ପ୍ରତିଦିନ ରଜଃପ୍ରବୃତ୍ତି ହୁଏ, ସେହି ନାରୀ ସେହି ରଜୋଯୋଗରେ ଅଶୁଚି ହେବ ନାହିଁ, କାରଣ ସେହି ରଜଃ-ପ୍ରବୃତ୍ତି ପ୍ରାକୃତିକ ନୁହେ । ୧୮ ।

ରମଣୀମାନେ ରଜସ୍ୱଲା ହେଲେ ପ୍ରଥମଦିବସ ଚଣ୍ଡାଳୀ ସଦୃଶୀ ଦ୍ୱିତୀୟଦିବସ ବ୍ରହ୍ମହତ୍ୟାପାତକରେ ପାତକିନୀ ସଦୃଶୀ, ତୃତୀୟଦିବସରେ ରଜକୀ ସଦୃଶୀ ହୁଅନ୍ତି, ଚତୁର୍ଥଦିବସରେ ଶୁଦ୍ଧିଲାଭ କରନ୍ତି । ୧୯ ।

ଯେବେ କୌଣସି ରୋଗାତୁରା କାମିନୀ ରଜସ୍ୱଲା ହୁଏ, ଏବଂ ଯେବେ ସେହି ଅବସ୍ଥାରେ ତାହାର ସ୍ନାନଦିନ ଉପସ୍ଥିତ ହୁଏ ତାହା ହେଲେ ଅନାତୁର କୌଣସିବ୍ୟକ୍ତି ଦଶଥର ସ୍ନାନ କରି ସେହି ଆତୁରା ରମଣୀକୁ ସେହି ଦଶଥର ସ୍ପର୍ଶ କରିବ, ସେହିପରି ଦଶଥର ସ୍ପର୍ଶରେ ସେହି ପୀଡ଼ିତା-ନାରୀ ଶୁଚି ହେବ । ୨୦ ।

ଉଚ୍ଛିଷ୍ଟୋଚ୍ଛିଷ୍ଟସଂସ୍ପୃଷ୍ଟଃ ଶୁନା ଶୂଦ୍ରେଣ ବା ଦ୍ୱିଜଃ ।
ଉପୋଷ୍ୟ ରଜନୀମେକାଂ ପଞ୍ଚଗବ୍ୟେନ ଶୁଦ୍ଧ୍ୟତି ॥ ୨୧ ॥
ଅନୁଚ୍ଛିଷ୍ଟେନ ଶୂଦ୍ରେଣ ସ୍ପର୍ଶେ ସ୍ନାନଂ ବିଧୀୟତେ ।
ଉଚ୍ଛିଷ୍ଟେନ ଚ ସଂସ୍ପୃଷ୍ଟଃ ପ୍ରାଜାପତ୍ୟଂ ସମାଚରେତ୍ ॥ ୨୨ ॥
ଭସ୍ମନା ଶୁଦ୍ଧ୍ୟତେ କାଂସ୍ୟଂ ସୁରୟା ଯ ନ ଲିପ୍ୟତେ ।
ସୁରାମାତ୍ରେଣ ସଂସ୍ପୃଷ୍ଟଂ ଶୁଦ୍ଧ୍ୟତେ ଽଗ୍ନ୍ୟୁପଲେପନୈଃ ॥ ୨୩ ॥
ଗବାଘ୍ରାତାନି କାଂସ୍ୟାନି ଶ୍ୱ-କା-କୋପହତାନି ଚ ।
ଶୁଦ୍ଧ୍ୟନ୍ତି ଦଶଭିଃ କ୍ଷାରୈଃ ଶୂଦ୍ରୋଚ୍ଛିଷ୍ଟାନି ଯାନି ଚ ॥ ୨୪ ॥
ଗଣ୍ଡୂଷଂ ପାଦଶୌଚଂ ଚ କୃତ୍ୱା ବୈ କାଂସ୍ୟଭାଜନେ ।
ଷଣ୍ମାସାନ୍ ଭୁବି ନିକ୍ଷିପ୍ୟ ଉଦ୍ଧୃତ୍ୟ ପୁନରାହରେତ୍ ॥ ୨୫ ॥

---

ଯେବେ କେହି ଶୂଦ୍ରର କି କୁକ୍କୁରର ଉଚ୍ଛିଷ୍ଟକୁ ଛୁଇଁ କି ଉଚ୍ଛିଷ୍ଟ-ଯୁକ୍ତ ଶୂଦ୍ରକୁ ବା କୁକ୍କୁରକୁ ଛୁଇଁ କୌଣସି ଦ୍ୱିଜକୁ ସ୍ପର୍ଶ କରେ, ତାହା ହେଲେ ସେହି ଦ୍ୱିଜ ଏକରାତ୍ରି ଉପବାସ କରି ପଞ୍ଚଗବ୍ୟସେବନଦ୍ୱାରା ଶୁଦ୍ଧିଲାଭ କରିପାରିବ । ୨୧ ।

ଯେବେ କୌଣସି ଉଚ୍ଛିଷ୍ଟବିରହିତ ଶୂଦ୍ର କୌଣସି ବ୍ରାହ୍ମଣଙ୍କୁ ସ୍ପର୍ଶ କରନ୍ତି, ତାହା ହେଲେ ବ୍ରାହ୍ମଣଙ୍କର ସ୍ନାନ କରିବାର ବିଧି ବିହିତ ହୋଇଅଛି । ଉଚ୍ଛିଷ୍ଟଯୁକ୍ତ ହୋଇ ଶୂଦ୍ର ବ୍ରାହ୍ମଣଙ୍କୁ ଛୁଇଁଲେ ପ୍ରାଜାପତ୍ୟ ବ୍ରତକରି ଶୁଦ୍ଧିଲାଭ କରିବ । ୨୨ ।

କାଂସ୍ୟପାତ୍ର ଯେବେ ସୁରାସ୍ପୃଷ୍ଟ ନ ହୁଏ, ତାହା ହେଲେ ଭସ୍ମଦ୍ୱାରା ପବିତ୍ର ହୋଇପାରେ; ପରନ୍ତୁ ଯେଉଁ କାଂସ୍ୟପାତ୍ରରେ ସୁରା ନିହିତ ହୋଇ ଥିବ ତାହା ଅଗ୍ନିରେ ଉତ୍ତପ୍ତ କଲେ ଶୁଦ୍ଧ ହେବ । ୨୩ ।

ଯେଉଁ କାଂସ୍ୟପାତ୍ର ଗାଭୀକର୍ତ୍ତୃକ ଆଘ୍ରାତ ହୋଇଥିବ, ଯେଉଁ କାଂସ୍ୟପାତ୍ର କାକ ବା କୁକ୍କୁରଦ୍ୱାରା ଉଚ୍ଛିଷ୍ଟ ହୋଇଥିବ, ଯେଉଁ କାଂସ୍ୟପାତ୍ର ଶୂଦ୍ରୋଚ୍ଛିଷ୍ଟ ହୋଇଥିବ, ତାହା ଦଶ ଥର କ୍ଷାର ଦେଇ ମାର୍ଜ୍ଜନ କଲେ ଶୁଦ୍ଧ ହୋଇପାରିବ । ୨୪ ।

ଯେବେ କୌଣସି ବ୍ୟକ୍ତି କାଂସ୍ୟପାତ୍ରରେ ଅଞ୍ଚୁଏ ବା ପାଦ ଧୌତ କରେ, ତାହା ହେଲେ ସେହି କାଂସ୍ୟପାତ୍ର ଛଅ ମାସ ଭୂମଧ୍ୟରେ ପୋତି କରି ରଖିବ; ଛଅମାସ ପରେ ସେହି କାଂସ୍ୟପାତ୍ର ଉଦ୍ଧରଣପୂର୍ବ୍ବକ ବ୍ୟବହାର କରିପାରିବ । ୨୫ ।

ଅମ୍ଲୋଦକେନ ତାମ୍ରସ୍ୟ ସୀସସ୍ୟ ତ୍ରପୁଣସ୍ତଥା ।
ଭସ୍ମାଦ୍ଭିଃ କାଂସ୍ୟଲୋହାନାଂ ଶୁଦ୍ଧିଃ ପ୍ଲାବୋ ଦ୍ରବସ୍ୟ ଚ ॥ ...

ଅଗ୍ନେଃ ସ୍ପର୍ଶପ୍ରସାରେଣ ସୀସସ୍ୟାଗ୍ନୌ ବିଶୋଧନଂ ।
ଦନ୍ତମସ୍ଥି ତଥା ଶୃଙ୍ଗଂ ରୌପ୍ୟଂ ସୌବର୍ଣ୍ଣଭାଜନଂ ॥ ୨୬ ॥
ମଣିପାଷାଣଶଙ୍ଖାଶ୍ଚ ଏତାନ୍ ପ୍ରକ୍ଷାଳୟେଜ୍ଜଲୈଃ ।
ପାଷାଣେ ତୁ ପୁନର୍ଘୃଷ୍ଟିରେଷା ଶୁଦ୍ଧିରୁଦାହୃତା ॥ ୨୭ ॥
ମୃଦ୍ଭାଣ୍ଡଦହନାଚ୍ଛୁଦ୍ଧିର୍ଧାନ୍ୟାନାଂ ମାର୍ଜ୍ଜନାଦପି ॥ ୨୮ ॥
ଅଭିପ୍ଲୁ ପ୍ରୋକ୍ଷଣଂ ଶୌଚଂ ବହୂନାଂ ଧାନ୍ୟବାସସାଂ ।
ପ୍ରକ୍ଷାଳନେନ ତ୍ୱଳ୍ପାନାମଦ୍ଭିଃ ଶୌଚଂ ବିଧୀୟତେ ॥ ୨୯ ॥
ବେଣୁବଲ୍କଲଚୀରାଣାଂ କ୍ଷୌମକାର୍ପାସବାସସାଂ ।
ଔର୍ଣ୍ଣାନାଂ ନେତ୍ରପଟ୍ଟାନାଂ ଜଲାଚ୍ଛୌଚଂ ବିଧୀୟତେ ॥ ୩୦ ॥
ତୂଳକାଦ୍ୟୁପଧାନାନି ପୀତରକ୍ତମ୍ବରାଣି ଚ ।
ଶୋଷୟିତ୍ୱାର୍କତାପେନ ପ୍ରୋକ୍ଷୟିତ୍ୱା ଶୁଚିର୍ଭବେତ୍ ॥ ୩୧ ॥
ମୁଞ୍ଜୋପସ୍କରଶୂର୍ପାଣାଂ ଶାଣସ୍ୟ ଫଲଚର୍ମ୍ମଣାଂ ।
ତୃଣକାଷ୍ଠାଦିରଜ୍ଜୂନାମୁଦକପ୍ରୋକ୍ଷଣଂ ମତଂ ॥ ୩୨ ॥

---

ଲୌହପାତ୍ର ସ୍ଥାନାନ୍ତରିତ କଲେ ଶୁଦ୍ଧ ହେବ, ସୀସକ ଅଗ୍ନିସ୍ପର୍ଶରେ ପବିତ୍ର ହେବ, ଦନ୍ତ, ଅସ୍ଥି, ଶୃଙ୍ଗ, ରୌପ୍ୟ, ଓ ସୁବର୍ଣ୍ଣପାତ୍ର । ୨୬ ।

ମଣିମୟ ପାତ୍ର, ପାଷାଣମୟ ପାତ୍ର, ଓ ଶଙ୍ଖ, ଜଳଦ୍ୱାରା ପ୍ରକ୍ଷାଳନ କଲେ ଶୁଦ୍ଧ ହେବ, ପାଷାଣମୟ ପାତ୍ର ପୁନର୍ବାର ମାଜିନେବା ଉଚିତ ।୨୭।

ମୃଣ୍ମୟ ଭାଣ୍ଡ ପୋଡ଼ାଇ ନେଲେ ଶୁଦ୍ଧ ହୁଏ, ଧାନ୍ୟ ମାର୍ଜନ ପୂର୍ବକ ପରିଷ୍କାର କରି ନେଲେ ଶୁଦ୍ଧ ହୁଏ । ୨୮ ।

ବହୁଧାନ୍ୟ ବା ବହୁବସ୍ତ୍ର ଉଚ୍ଛିଷ୍ଟଦ୍ୱାରା ବା ମଳାଦିଦ୍ୱାରା ଅପବିତ୍ର ହେଲେ ତାହା କେବଳ ଜଳବିନ୍ଦୁଦ୍ୱାରା ପ୍ରୋକ୍ଷିତ କରିବ, ଅଳ୍ପ ହେଲେ ଜଳଦ୍ୱାରା ପ୍ରକ୍ଷାଳନ କରି ନେବାକୁ ହେବ, ଏହାଦ୍ୱାରା ତାହା ଶୁଦ୍ଧ ହେବ ବଂଶ ବଲ୍କଲ, ଛିନ୍ନବସ୍ତ୍ର, ପଟ୍ଟବସ୍ତ୍ର, କାର୍ପାସବସ୍ତ୍ର ଓ ଲୋମଜବସ୍ତ୍ର କ୍ଷୌମ, ଏହି ସମୁଦାୟ ଜଳଦ୍ୱାରା ଶୁଦ୍ଧ ହୁଏ । ୨୯ । ୩୦ ।

ଖଟ, ବାଲିଶ, ଗଦି, ଲେପ ପ୍ରଭୃତି ପୀତବସ୍ତ୍ର, ରକ୍ତବସ୍ତ୍ର, ଏହି ସମୁଦାୟ ରୌଦ୍ରରେ ଉତ୍ତପ୍ତ କରି ଜଳଦ୍ୱାରା ପ୍ରୋକ୍ଷିତ କଲେ ଶୁଦ୍ଧ ହେବ ।୩୧।

ମୁଞ୍ଜ ସମାର୍ଜ୍ଜନୀ, କୁଲା, ଅଶ୍ୱଶାଣଦେବାର ଫଳକ ଓ ଚର୍ମ୍ମ, ତୃଣ କାଷ୍ଠପ୍ରଭୃତି ବାନ୍ଧିବାର ରଜ୍ଜୁ, ଏହି ସକଳ ବସ୍ତୁ ଜଳଦ୍ୱାରା ପ୍ରୋକ୍ଷିତ ହେଲେ ଶୁଦ୍ଧ ହେବ । ୩୨ ।

ମାର୍ଜ୍ଜାରମକ୍ଷିକାକୀଟପତଙ୍ଗକୃମିଦର୍ଦ୍ଦୁରାଃ ।
ମେଧ୍ୟାମେଧ୍ୟଂ ସ୍ପୃଶନ୍ତ୍ୟେବ ନୋଚ୍ଛିଷ୍ଟାନ୍ ମନୁରବ୍ରବୀତ୍ ॥ ୩୩ ॥
ଭୂମିଂ ସ୍ପୃଷ୍ଟ୍ୱା ଗତଂ ତୋୟଂ ଯଶ୍ଚାପ୍ୟନ୍ୟୋନ୍ୟବିପ୍ରୁଷଃ ।
ଭୁକ୍ତୋଚ୍ଛିଷ୍ଟଂ ତଥା ସ୍ନେହଂ ନୋଚ୍ଛିଷ୍ଟଂ ମନୁରବ୍ରବୀତ୍ ॥ ୩୪ ॥
ତାମ୍ବୂଲେକ୍ଷୁଫଳେ ଚୈବ ଭୁକ୍ତସ୍ନେହାନୁଲେପନେ ।
ମଧୁପର୍କେ ଚ ସୋମେ ଚ ନୋଚ୍ଛିଷ୍ଟଂ ମନୁରବ୍ରବୀତ୍ ॥ ୩୫ ॥
ରଥ୍ୟାକର୍ଦ୍ଦମତୋୟାନି ନାବଃ ଶସ୍ୟତୃଣାନି ଚ ।
ମରୁତାର୍କେଣ ଶୁଦ୍ଧ୍ୟନ୍ତି ପକ୍ୱେଷ୍ଟକଚିତାନି ଚ ॥ ୩୬ ॥
ଅଦୁଷ୍ଟାଃ ସନ୍ତତାଧାରା ବାତୋଦ୍ଧୂତାଶ୍ଚ ରେଣବଃ ।
ସ୍ତ୍ରିୟୋ ବୃଦ୍ଧାଶ୍ଚ ବାଲାଶ୍ଚ ନ ଦୁଷ୍ୟନ୍ତି କଦାଚନ ॥ ୩୭ ॥
କ୍ଷୁତେ ନିଷ୍ଠୀବନେ ଚୈବ ଦନ୍ତୋଚ୍ଛିଷ୍ଟେ ତଥାନୃତେ ।
ପତିତାନାଂ ଚ ସମ୍ଭାଷେ ଦକ୍ଷିଣଂ ଶ୍ରବଣଂ ସ୍ପୃଶେତ୍ ॥ ୩୮ ॥

---

ମାର୍ଜ୍ଜାର ମକ୍ଷିକା କୀଟ ପତଙ୍ଗ କୃମି ଭେକ, ଏମାନେ ସର୍ବଦା ପବିତ୍ର ଓ ଅପବିତ୍ର ଦ୍ରବ୍ୟ ସ୍ପର୍ଶ କରଥାନ୍ତି ସୁତରାଂ ଏମାନଙ୍କଦ୍ୱାରା କୌଣସି ବସ୍ତୁ ଉଚ୍ଛିଷ୍ଟ ହୁଏ ନାହିଁ, ଏହା ମନୁ ସ୍ୱୀକାର କରନ୍ତି । ୩୩ ।

ଯେଉଁ ଜଳ ଭୂମି-ସ୍ପର୍ଶ କରି ଗଳି ଯାଇଅଛି, ଯେଉଁ ଜଳ ଅନ୍ୟ ଜଳସହିତ ମିଶ୍ରିତ ହୋଇଅଛି, ସେହି ଜଳ ଯେବେ ଭୁକ୍ତୋଚ୍ଛିଷ୍ଟ ହୁଏ, ତଥାପି ତାହା ଉଚ୍ଛିଷ୍ଟ ହେବ ନାହିଁ, ଏହିରୂପେ ସ୍ନେହଦ୍ରବ୍ୟ ଅପବିତ୍ର ହୁଏ ନାହିଁ ମନୁ ଏ ପ୍ରକାରରେ ବ୍ୟବସ୍ଥା ଦେଇଅଛନ୍ତି । ୩୪ ।

ତାମ୍ବୂଲ, ଇକ୍ଷୁ, ଫଳ ସ୍ନେହ ଅନୁଲେପନ ମଧୁପର୍କ ସୋମରସ; ଏଗୁଡ଼ିକ ସମୁଦାୟ ଉଚ୍ଛିଷ୍ଟ ହୁଏ ନାହିଁ, ମନୁ ଏହି ବ୍ୟବସ୍ଥାରେ ଅନୁମୋଦନ କରି ଅଛନ୍ତି ।

ମାର୍ଗ କର୍ଦ୍ଦମ, ଜଳ, ନୌକା, ପଥ; ତୃଣ, ପକ୍ୱଇଷ୍ଟକ ଏଗୁଡ଼ିକ ସମୁଦାୟ ବାୟୁଦ୍ୱାରା ଏବଂ ରୌଦ୍ରଦ୍ୱାରା ପରିଶୁଦ୍ଧ ହୁଏ । ୩୬ ।

ବାୟୁଦ୍ୱାରା ଉଡ୍ଡୀନ ଧୂଳି ସମୂହ ଏବଂ ବସ୍ତ୍ରଜଳଧାରା ଦୂଷିତ ହୁଏ ନାହିଁ, ନାରୀ ଜାତି, ବାଳକ ହେଉ ବା ଯୁବତୀ ହେଉ ବା ବୃଦ୍ଧା ହେଉ ସେମାନେ କେବେହେଲେ ଅପବିତ୍ର ହୁଅନ୍ତି ନାହିଁ । ୩୭ ।

ଛିଙ୍କ ହେଲେ ନିଷ୍ଠୀବନ କଲେ, ଅର୍ଥାତ୍ ଛେପ ପକାଇଲେ କୌଣସି ଅଙ୍ଗ ଦନ୍ତୋଚ୍ଛିଷ୍ଟ ହେଲେ, ଅଙ୍ଗୀକୃତ ବାକ୍ୟ ମିଥ୍ୟା ହେଲେ ଏବଂ ପତିତ-ବ୍ୟକ୍ତି ସହିତ ଆଳାପ କଲେ ଦକ୍ଷିଣ କର୍ଣ୍ଣ ସ୍ପର୍ଶ କରିବ । ୩୮ ।

ଅଗ୍ନିରାପଶ୍ଚ ବେଦାଶ୍ଚ ସୋମସୂର୍ଯ୍ୟାନିଲାସ୍ତଥା ।
ଏତେ ସର୍ବେ ଽପି ବିପ୍ରାଣାଂ ଶ୍ରୋତ୍ରେ ତିଷ୍ଠନ୍ତି ଦକ୍ଷିଣେ ॥ ୩୯ ॥
ପ୍ରଭାସାଦୀନି ତୀର୍ଥାନି ଗଙ୍ଗାଦ୍ୟାଃ ସରିତସ୍ତଥା ।
ବିପ୍ରସ୍ୟ ଦକ୍ଷିଣେ କର୍ଣ୍ଣେ ସାନ୍ନିଧ୍ୟଂ ମନୁରବ୍ରବୀତ୍ ॥ ୪୦ ॥
ଦେଶଭଙ୍ଗେ ପ୍ରବାସେ ବା ବ୍ୟାଧିଷୁ ବ୍ୟସନେଷ୍ୱପି ।
ରକ୍ଷେଦେବ ସ୍ୱଦେହାଦି ପଶ୍ଚାଦ୍ଧର୍ମଂ ସମାଚରେତ୍ ॥ ୪୧ ॥
ଯେନ କେନ ଚ ଧର୍ମେଣ ମୃଦୁନା ଦାରୁଣେନ ଚ ।
ଉଦ୍ଧରେଦୀନମାତ୍ମାନଂ ସମର୍ଥୋ ଧର୍ମମାଚରେତ୍ ॥ ୪୨ ॥
ଆପତ୍କାଲେ ତୁ ସମ୍ପ୍ରାପ୍ତେ ଶୌଚାଚାରଂ ନ ଚିନ୍ତୟେତ୍ ।
ସ୍ୱୟଂ ସମୁଦ୍ଧରେତ୍ ପଶ୍ଚାତ୍ ସ୍ୱସ୍ଥୋ ଧର୍ମଂ ସମାଚରେତ୍ ॥ ୪୩ ॥
ଇତି ପାରାଶରେ ଧର୍ମଶାସ୍ତ୍ରେ ସପ୍ତମୋ ଽଧ୍ୟାୟଃ ।

---

କାରଣ ଅଗ୍ନି ଜଳ ବେଦ ରବି ସୋମ ଅନିଳ ଏମାନେ ସର୍ବଦା ବ୍ରାହ୍ମଣଙ୍କ ଦକ୍ଷିଣକର୍ଣ୍ଣରେ ବାସ କରନ୍ତି । ୩୯ ।

ମନୁ ବୋଲିଅଛନ୍ତି ଯେ ପ୍ରଭାସପ୍ରଭୃତି ତୀର୍ଥସମ୍ପ୍ରଦାୟ ଓ ଗଙ୍ଗାପ୍ରଭୃତି ନଦୀସମ୍ପ୍ରଦାୟ ବ୍ରାହ୍ମଣଙ୍କ ଦକ୍ଷିଣକର୍ଣ୍ଣରେ ସର୍ବଦା ସନ୍ନିହିତ ଥାନ୍ତି । ୪୦ ।

ଦେଶବିପ୍ଳବ ହେଲେ ବା ଦୁର୍ଭିକ୍ଷ ଘଟିଲେ ପ୍ରବାସକୁ ଗମନ କଲେ ପୀଡ଼ାଦି ହେଲେ ବିପଦ ଉପସ୍ଥିତହେଲେ ଯେଉଁ କୌଣସିରୂପେ ଆପଣାର ଦେହାଦି ରକ୍ଷା କରିବ ପଶ୍ଚାତ୍ ସୁସ୍ଥ ଓ ନିରୁଦ୍‌ବେଗ ହୋଇ ଧର୍ମାନୁଷ୍ଠାନ କରିବ, ଓ ଶାସ୍ତ୍ରର ବିଧି ଅନୁସାରେ ଚଳିବ । ୪୧ ।

ସ୍ୱୟଂ ବିପଦ୍‌ଗ୍ରସ୍ତ ହେଲେ କୋମଳ ବା କଠୋରତାଦ୍ୱାରା ଯେଉଁ କୌଣସି ଧର୍ମରେ ଦୁଃଖିତ ଆତ୍ମାକୁ ଉଦ୍ଧାର କରିବ ପରେ ଯେତେବେଳେ ସମର୍ଥ ହେବ ତେତେବେଳେ ଧର୍ମାନୁଷ୍ଠାନ କରିବ । ୪୨ ।

ଯେତେବେଳେ ବିପତ୍କାଳ ଉପସ୍ଥିତ ହେବ, ତେତେବେଳେ ଶୌଚାଚାର କିଛିହେଁ ଚିନ୍ତା କରିବ ନାହିଁ ସେହିସମୟରେ କୌଣସିରୂପେ ଆପଣାକୁ ଉଦ୍ଧାର କରିବ, ପରେ ଯେତେବେଳେ ବିପଦ ଦୂରହେବ ଓ ସ୍ୱୟଂ ସୁସ୍ଥ ହେବ, ତେତେବେଳେ ଧର୍ମାନୁଷ୍ଠାନରେ ପ୍ରବୃତ୍ତ ହେବ । ୪୩ ।

ଇତି ପରାଶରସଂହିତା ସପ୍ତମ ଅଧ୍ୟାୟ ।

## ଅଷ୍ଟମ-ଅଧ୍ୟାୟ ।

ଗବାଂ ବନ୍ଧନଯୋକ୍ତ୍ରେ ତୁ ଭବେନ୍ମୃତ୍ୟୁରକାମତଃ ।
ଅକାମାତ୍ କୃତପାପସ୍ୟ ପ୍ରାୟଶ୍ଚିତ୍ତଂ କଥଂ ଭବେତ୍ ॥ ୧ ॥
ବେଦବେଦାଙ୍ଗବିଦୁଷାଂ ଧର୍ମଶାସ୍ତ୍ରଂ ବିଜାନତାଂ ।
ସ୍ୱକର୍ମରତବିପ୍ରାଣାଂ ସ୍ୱକଂ ପାପଂ ନିବେଦୟେତ୍ ॥ ୨ ॥
ଅତ ଊର୍ଦ୍ଧ୍ୱଂ ପ୍ରବକ୍ଷାମି ଉପସ୍ଥାନସ୍ୟ ଲକ୍ଷଣଂ ।
ଉପସ୍ଥିତୋ ହି ନ୍ୟାୟେନ ବ୍ରତାଦେଶନମର୍ହତି ॥ ୩ ॥
ସନ୍ଦେହେ ନିଃସଂଶୟେ ପାପେ ନ ଭୁଞ୍ଜୀତାନୁପସ୍ଥିତଃ ।
ଭୁଞ୍ଜାନୋ ବର୍ଦ୍ଧୟେତ୍ପାପଂ ପର୍ଷଦ୍ ଯତ୍ର ନ ବିଦ୍ୟତେ ॥ ୪ ॥
ସଂଶୟେ ତୁ ନ ଭୋକ୍ତବ୍ୟଂ ଯାବତ୍ କାର୍ଯ୍ୟବିନିଶ୍ଚୟଃ ।
ପ୍ରମାଦଶ୍ଚ ନ କର୍ତ୍ତବ୍ୟୋ ଯଥୈବାସଂଶୟସ୍ତଥା ॥ ୫ ॥

---

କୌଣସି ଗାଈ ବା ବୃଷ ଯେବେ ବନ୍ଧନସ୍ତମ୍ଭରେ ରଜ୍ଜୁବଦ୍ଧ ଥାଏ ଏବଂ ଯେବେ ସେହିଅବସ୍ଥାରେ ଅକାମତଃ ତାହାର ମୃତ୍ୟୁ ହୁଏ ତାହା ହେଲେ ସେ ଅକାମକୃତ ପାପ କିରୂପରେ ମୋଚନ ହେବ, ତାହା ନିରୂପଣ କରା ଯାଉଅଛି । ୧ ।

ଏପ୍ରକାର ଘଟନା ହେଲେ ବେଦବେଦାନ୍ତପାରଗ ଧର୍ମଶାସ୍ତ୍ରଜ୍ଞ ସ୍ୱକର୍ମନିରତ ବ୍ରାହ୍ମଣଙ୍କ ନିକଟରେ ଆପଣାର ପାପବିଷୟ ନିବେଦନ କରିବା।୨।

କୃତପାପବ୍ୟକ୍ତି କିରୂପେ ଧର୍ମଜ୍ଞ ବ୍ରାହ୍ମଣଙ୍କ ନିକଟରେ ଉପସ୍ଥିତ ହେବ ତାହା ବୋଲୁଅଛୁଁ, କୃତପାପବ୍ୟକ୍ତି ନ୍ୟାୟାନୁସାରେ ଉପସ୍ଥିତ ହେଲେ ତାହାଙ୍କୁ ପରିଷଦମାନେ ବ୍ରତପାଳନର ଉପଦେଶ ଦେବେ ।୩।

ଯେବେ କୌଣସି ବ୍ୟକ୍ତିର ଅନ୍ତଃକରଣରେ ପାପ ହୋଇଅଛି ବୋଲି ନିଶ୍ଚୟ ହୁଏ, ତାହା ହେଲେ ସେହିବ୍ୟକ୍ତି, ଯେପର୍ଯ୍ୟନ୍ତ ପରିଷଦଙ୍କ ନିକଟରେ ଉପସ୍ଥିତ ନ ହେବ, ସେପର୍ଯ୍ୟନ୍ତ ଆହାର କରିବ ନାହିଁ । ଯେଉଁ ସ୍ଥାନରେ ପରିଷଦ ନାହାନ୍ତି, ସେହି ସ୍ଥଳରେ ଯେବେ କେହି ଅଳ୍ପେ ପାତକୀ ହୋଇଅଛି, ବିଷୟବୁଦ୍ଧିପାଇ ପରିଷଦଙ୍କ ନିକଟକୁ ନ ଯାଇ ଅଗ୍ରେ ଭୋଜନ କରଇ ତାହା ହେଲେ ତାହାର ପାପ ବୃଦ୍ଧି ହୁଏ । ୪ ।

ଯେବେ ପାପ ସନ୍ଦେହ ହୁଏ, ତାହା ହେଲେ ଯେପର୍ଯ୍ୟନ୍ତ ତାହାର ନିଶ୍ଚୟ ନ ହେବ, ସେପର୍ଯ୍ୟନ୍ତ ଆହାର କରିବ ନାହିଁ । ଯେପର୍ଯ୍ୟନ୍ତ ନିଃସଂଶୟ ନ ହୁଏ, ସେପର୍ଯ୍ୟନ୍ତ ସାବଧାନ ହୋଇ ରହିବ । ୫ ।

କୃତ୍ୱା ପାପଂ ନ ଗୁହ୍ୟେତ ଗୁହ୍ୟମାନଂ ବିବର୍ଦ୍ଧତେ ।
ସ୍ୱଳ୍ପଂ ବାଥ ପ୍ରଭୂତଂ ବା ଧର୍ମବିଦ୍ଭ୍ୟୋ ନିବେଦୟେତ୍ । ୬ ।
ତେ ହି ପାପେ କୃତେ ବେଦ୍ୟା ହନ୍ତାରଶ୍ଚୈବ ପାପ୍ମନାଂ ।
ବ୍ୟାଧିତସ୍ୟ ଯଥା ବୈଦ୍ୟାବୁଦ୍ଧିମନ୍ତୋ ରୁଜାପହାଃ । ୭ ।
ପ୍ରାୟଶ୍ଚିତ୍ତେ ସମୁତ୍ପନ୍ନେ ହ୍ରୀମାନ୍ ସତ୍ୟପରାୟଣଃ ।
ମୃଦୁରାର୍ଜବସମ୍ପନ୍ନଃ ଶୁଦ୍ଧିଂ ଗଚ୍ଛେତ ମାନବଃ । ୮ ।
ସଚେଲଂ ବାଗ୍ୟତଃ ସ୍ନାତ୍ୱା କ୍ଳିନ୍ନବାସାଃ ସମାହିତଃ ।
କ୍ଷତ୍ରିୟୋ ବାଥ ବୈଶ୍ୟୋ ବା ତତଃ ପର୍ଷଦମାବ୍ରଜେତ୍ । ୯ ।
ଉପସ୍ଥାୟ ତତଃ ଶୀଘ୍ରମାର୍ତ୍ତିମାନ୍ ଧରଣୀଂ ବ୍ରଜେତ୍ ।
ଗାତ୍ରୈଶ୍ଚ ଶିରସା ଚୈବ ନଚ କିଞ୍ଚିଦୁଦାହରେତ୍ । ୧୦ ।
ସାବିତ୍ର୍ୟାଶ୍ଚାପି ଗାୟତ୍ର୍ୟାଃ ସନ୍ଧ୍ୟୋପାସ୍ତ୍ୟଗ୍ନିକାର୍ଯ୍ୟୟୋଃ ।
ଅଜ୍ଞାନାତ୍ କୃଷି କର୍ତ୍ତାରୋ ବ୍ରାହ୍ମଣା ନାମଧାରକାଃ । ୧୧ ।

---

ପାପ କରି କେତେବେଳେ ତାହା ଗୋପନ କରିବ ନାହିଁ, କାରଣ ପାତକ ଗୋପନ କଲେ, ତାହା ବୃଦ୍ଧି ପ୍ରାପ୍ତ ହୋଇଥାଏ । ପାପ ଅଳ୍ପ ହେଉ ବା ଅଧିକ ହେଉ ତତ୍‌କ୍ଷଣାତ୍ ତାହା ଧର୍ମଜ୍ଞବ୍ରାହ୍ମଣଙ୍କ ନିକଟରେ ନିବେଦନ କରିବ । ୬ ।

ଯେପରି ବୁଦ୍ଧିମାନ୍ ବୈଦ୍ୟଗଣ ପୀଡ଼ାଭିଭୂତ ବ୍ୟକ୍ତିଙ୍କର ପୀଡ଼ା ନାଶ କରନ୍ତି ସେହିପରି ଧର୍ମଶାସ୍ତ୍ରଜ୍ଞ ବ୍ରାହ୍ମଣମାନେ ପାପିମାନଙ୍କ ପାପନାଶର ବିଧାନ କରି ଦିଅନ୍ତି । ୭ ।

ପରିଷଦଙ୍କ ଆଦେଶରେ କୃତପାପର ପ୍ରାୟଶ୍ଚିତ୍ତ ହେଲେ ଲଜ୍ଜାଯୁକ୍ତ ସରଳ ସତ୍ୟପରାୟଣ ବ୍ୟକ୍ତି ଶୁଦ୍ଧିଲାଭ କରେ । ୮ ।

କ୍ଷତ୍ରିୟ ହେଉ ବା ବୈଶ୍ୟ ହେଉ, ପାତକୀ ହେବା ମାତ୍ର ବାକ୍ୟ-ସଂଯମ ପୂର୍ବକ ସେହିବସ୍ତ୍ରରେ ସ୍ନାନ କରି ଆର୍ଦ୍ରବସ୍ତ୍ରରେ ସମାହିତହୃଦୟରେ ପରିଷଦଙ୍କ ନିକଟକୁ ଗମନ କରିବ । ୯ ।

ଯେତେଶୀଘ୍ର ହୋଇ ପାରେ, ପରିଷଦଙ୍କ ନିକଟକୁ ଗମନ କରି କାତରହୃଦୟରେ ମସ୍ତକଦ୍ୱାରା ଓ ସର୍ବାଙ୍ଗଦ୍ୱାରା ଧରଣୀତଳରେ ବିଲୁଣ୍ଠିତ ହେବ, କୌଣସି କଥା କହିବ ନାହିଁ । ୧୦ ।

ଯେଉଁ ବ୍ୟକ୍ତି ସାବିତ୍ରୀ (ବେଦ) ଓ ଗାୟତ୍ରୀ ଅବଗତ ନୁହନ୍ତି, ଯେଉଁ ବ୍ୟକ୍ତି ସନ୍ଧ୍ୟୋପାସନା କରନ୍ତି ନାହିଁ, ଏବଂ ଅଗ୍ନିରେ ଆହୁତି ନ ଦିଅନ୍ତି

ଅବ୍ରତାନାମମନ୍ତ୍ରାଣାଂ ଜାତିମାତ୍ରୋପଜୀବିନାଂ ।
ସହସ୍ରଶଃ ସମେତାନାଂ ପରିଷତ୍ତ୍ୱଂ ନ ବିଦ୍ୟତେ ॥ ୧୬ ॥
ଯଦ୍‌ବଦନ୍ତି ତମୋମୂଢ଼ା ମୂର୍ଖା ଧର୍ମ୍ମମତଦ୍ବିଦଃ ।
ତତ୍ପାପଂ ଶତଧା ଭୂତ୍ୱା ତଦ୍‌ବକ୍ତୃନ୍ ଅଧିଗଚ୍ଛତି ॥ ୧୭ ॥
ଅଜ୍ଞାତ୍ୱା ଧର୍ମ୍ମଶାସ୍ତ୍ରାଣି ପ୍ରାୟଶ୍ଚିତ୍ତଂ ଦଦାତି ଯଃ ।
ପ୍ରାୟଶ୍ଚିତ୍ତୀ ଭବେତ୍ ପୂତଃ କିଲ୍ବିଷଂ ପରିଷଦ୍ ବ୍ରଜେତ୍ ॥ ୧୮ ॥
ଚତ୍ୱାରୋ ବା ତ୍ରୟୋ ବାପି ଯଂ ବ୍ରୂୟୁର୍ବେଦପାରଗାଃ ।
ସ ଧର୍ମ୍ମ ଇତି ବିଜ୍ଞେୟୋ ନେତରୈସ୍ତୁ ସହସ୍ରଶଃ ॥ ୧୯ ॥
ପ୍ରମାଣମାର୍ଗଂ ମାର୍ଗନ୍ତୋ ଯେ ଧର୍ମଂ ପ୍ରବଦନ୍ତି ବୈ ।
ତେଷାମୁଦ୍‌ଜତେ ପାପଂ ସଦ୍ଭୂତଗୁଣବାଦିନାଂ ॥ ୨୦ ॥

---

ଯେଉଁ ବ୍ୟକ୍ତି କୃଷିକାର୍ଯ୍ୟ କରନ୍ତି, ସେ ନାମମାତ୍ର ବ୍ରାହ୍ମଣ । ଫଳତଃ ଧର୍ମକର୍ମ-ବିଷୟରେ ତାହାଙ୍କୁ ବ୍ରାହ୍ମଣବୋଲି ଗଣନା କରାଯାଇ ନ ପାରେ । ୧୧ ।

ଯେଉଁ ସକଳ ବ୍ରାହ୍ମଣ ବ୍ରତରହିତ, ମନ୍ତ୍ରରହିତ ଓ ଜାତିମାତ୍ରୋପଜୀବୀ ଏପରି ବ୍ରାହ୍ମଣ ସହସ୍ର ଏକତ୍ର ମିଳିତ ହେଲେହେଁ ପରିଷଦ୍‌ଶବ୍ଦରେ ବାଚ୍ୟ ହୋଇ ପାରନ୍ତି ନାହିଁ । ୧୬ ।

ଅଜ୍ଞାନାଭିଭୂତ ମୂର୍ଖ ଧର୍ମଶାସ୍ତ୍ରାନଭିଜ୍ଞ ବ୍ରାହ୍ମଣମାନେ ଯେବେ ପ୍ରାୟ-ଶ୍ଚିତ୍ତର ବ୍ୟବସ୍ଥା ଦିଅନ୍ତି, ତାହା ହେଲେ ପାତକବ୍ୟକ୍ତି ପାପରୁ ମୁକ୍ତ ହୁଏ ସତ୍ୟ, କିନ୍ତୁ ସେହି ପାପ ଶତଗୁଣ ହୋଇ ସେହି ବ୍ୟବସ୍ଥାଦାତା ବ୍ରାହ୍ମଣମାନଙ୍କ ଶରୀରରେ ପ୍ରବେଶ କରେ । ୧୭ ।

ଯେଉଁମାନେ ଧର୍ମଶାସ୍ତ୍ର ନ ଜାଣି ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଦିଅନ୍ତି ସେମାନଙ୍କ ବ୍ୟବସ୍ଥାରେ ପାତକୀ ପାପରୁ ମୁକ୍ତ ହୁଏ, କିନ୍ତୁ ସେହି ପାପ ବ୍ୟବସ୍ଥାପକ ପରିଷଦଙ୍କ ଶରୀରରେ ସଂକ୍ରାନ୍ତ ହୋଇ ଥାଏ । ୧୮ ।

ଚାରିଜଣ ବା ତିନିଜଣ ବେଦପାରଗ ବ୍ରାହ୍ମଣ ଯାହା ବ୍ୟବସ୍ଥାପିତ କରିବେ ତାହାହିଁ ଧର୍ମ । ଅପର ସହସ୍ର ବ୍ୟକ୍ତି ଯାହା ବୋଲିବେ ତାହା ଧର୍ମ ହୋଇ ପାରିବ ନାହିଁ । ୧୯ ।

ଯେଉଁମାନେ ପ୍ରାମାଣିକପଥ ଅନ୍ୱେଷଣ ପୂର୍ବକ ଧର୍ମଶାସ୍ତ୍ରର ବ୍ୟବସ୍ଥା ଦିଅନ୍ତି, ସେମାନେ ଯଥାର୍ଥ ଧର୍ମବାଦୀ । ପାପ ସେହିମାନଙ୍କୁ ହିଁ ଭୟ କରେ । ୨୦ ।

ଯଥାଶ୍ମନି ସ୍ଥିତଂ ତୋୟଂ ମରୁତାର୍କେଣ ଶୁଷ୍ୟତି ।
ଏବଂ ପରିଷଦାଦେଶାନ୍ନାଶୟେଦ୍ଦେବ ଦୁଷ୍କୃତଂ ॥ ୧୭ ॥
ନୈବ ଗଚ୍ଛତି କର୍ତ୍ତାରଂ ନୈବ ଗଚ୍ଛତି ପର୍ଷଦଂ ।
ମାରୁତାର୍କାଦି ସଂଯୋଗାତ୍ ପାପଂ ନଶ୍ୟତି ତୋୟବତ୍ ॥ ୧୮ ॥
ଅନାହିତାଗ୍ନୟୋ ଯେ ତେଽନ୍ୟେ ବେଦବେଦାଙ୍ଗପାରଗାଃ ।
ପଞ୍ଚ ତ୍ରୟୋ ବା ଧର୍ମଜ୍ଞାଃ ପରିଷତ୍ ସା ପ୍ରକୀର୍ତ୍ତିତା ॥ ୧୯ ॥
ମୁନୀନାମାତ୍ମବିଦ୍ୟାନାଂ ଦ୍ୱିଜାନାଂ ଯଜ୍ଞଯାଜିନାଂ ।
ବେଦବ୍ରତେଷୁ ସ୍ନାତାନାମେକୋଽପି ପରିଷଦ୍ଭବେତ୍ ॥ ୨୦ ॥
ପଞ୍ଚପୂର୍ବଂ ମୟା ପ୍ରୋକ୍ତା ସ୍ତେଷାଞ୍ଚୈବ ତ୍ୱସମ୍ଭବେ ।
ସ୍ୱବୃତ୍ତିପରିତୁଷ୍ଟା ଯେ ପରିଷତ୍ ସା ପ୍ରକୀର୍ତ୍ତିତା ॥ ୨୧ ॥
ଅତଊର୍ଦ୍ଧ୍ୱଂ ତୁ ଯେ ବିପ୍ରାଃ କେବଳଂ ନାମଧାରକାଃ ।
ପରିଷତ୍ତ୍ୱଂ ନ ତେଷାଂ ବୈ ସହସ୍ରଗୁଣିତେଷ୍ୱପି ॥ ୨୨ ॥

---

ଯେମନ୍ତ ପ୍ରସ୍ତରସ୍ଥିତ ସଜଳ ବାୟୁଦ୍ୱାରା ଓ ସୂର୍ଯ୍ୟୋତ୍ତାପଦ୍ୱାରା ଶୁଷ୍କ ହୁଏ, ତାହାଙ୍କ ନ୍ୟାୟ ପରିଷଦଙ୍କ ଅଦେଶଦ୍ୱାରା ପାପପୁଞ୍ଜ କ୍ଷୟ ହୋଇ ଯାଏ । ୧୭ ।

ଯେପରି ବାୟୁ ଓ ରୌଦ୍ର ସଂଯୋଗରେ ସଜଳ ଶୁଷ୍କ ହୁଏ, ତଦ୍ରୂପ ପରିଷଦଙ୍କ ଅଦେଶଦ୍ୱାରା ପାପ ନଷ୍ଟ ହୋଇଥାଏ । ସେହି ପାପ କର୍ତ୍ତାଙ୍କ ଶରୀରରେ ରହେ ନାହିଁ, ପରିଷଦଙ୍କ ଶରୀରରେମଧ ସଞ୍ଚାରିତ ହୁଏ ନାହିଁ । ୧୮

ଯେ ସମସ୍ତ ବେଦବେଦାଙ୍ଗପାରଗ ଧର୍ମଜ୍ଞ ବ୍ରାହ୍ମଣ ଅହିତାଗ୍ନି ନୁହନ୍ତି, ସେମାନଙ୍କର ପାଞ୍ଚଜଣ ବା ତିନିଜଣଙ୍କର ସମବାୟକୁ ପରିଷଦ୍ ବୋଲାଯାଏ । ୧୯ ।

ଯେଉଁ ସମସ୍ତ ବ୍ରାହ୍ମଣ ଆତ୍ମଜ୍ଞାନସମ୍ପନ୍ନ, ଯେଉଁମାନେ ଯଜ୍ଞନିଷ୍ଠ ଓ ବେଦବ୍ରତପରାୟଣ, ସେମାନଙ୍କର ଏକବ୍ୟକ୍ତି ପରିଷଦ ହୋଇପାରନ୍ତି ।୨୦।

ପୂର୍ବରେ ବୋଲା ଯାଇଅଛି ଯେ ପଞ୍ଚବ୍ରାହ୍ମଣଦ୍ୱାରା ପରିଷଦ୍ ହୁଏ । ପରନ୍ତୁ ଯେବେ ବେଦପାରଗ ପଞ୍ଚବ୍ରାହ୍ମଣ ପ୍ରାପ୍ତ ନ ହୁଅନ୍ତି, ତାହା ହେଲେ ସ୍ୱବୃତ୍ତିପରାୟଣ ବ୍ରାହ୍ମଣ ଦୁଇଜଣ ବା ଏକଜଣ ଯାହା ପ୍ରାପ୍ତ ହେବାକୁ ହୁଏ, ତାହାଙ୍କୁ ପରିଷଦପଦରେ ନିର୍ଦ୍ଦେଶ କରି ଯାଇପାରେ । ୨୧ ।

ଯେସମସ୍ତ ବ୍ରାହ୍ମଣ ବେଦଜ୍ଞ ନୁହନ୍ତି, ଯେଉଁମାନେ କେବଳ ନାମ-

ଯଥା କାଷ୍ଠମୟୋ ହସ୍ତୀ ଯଥା ଚର୍ମ୍ମମୟୋ ମୃଗଃ ।
ବ୍ରାହ୍ମଣା ସ୍ତ୍ୱନଧୀୟାନା ସ୍ତ୍ରୟସ୍ତେ ନାମଧାରକାଃ ॥ ୨୩ ॥
ଗ୍ରାମସ୍ଥାନଂ ଯଥା ଶୂନ୍ୟଂ ଯଥା କୂପସ୍ତୁ ନିର୍ଜ୍ଜଳଃ ।
ଯଥା ହୁତମନଗ୍ନୌ ଚ ଅମନ୍ତ୍ରୋ ବ୍ରାହ୍ମଣସ୍ତଥା ॥ ୨୪ ॥
ଯଥା ଷଣ୍ଡୋଽଫଳଃସ୍ତ୍ରୀଷୁ ଯଥା ଗୌରୂଷରାଫଳା ।
ଯଥା ଚାଜ୍ଞେଽଫଳଂ ଦାନଂ ତଥା ବିପ୍ରୋଽନୃଚୋଽଫଳଃ ॥ ୨୫ ॥
ଚିତ୍ରଂ କର୍ମ୍ମ ଯଥା ନେକୈରଙ୍ଗୈରୁନ୍ମୀଲ୍ୟତେ ଶନୈଃ ।
ବ୍ରାହ୍ମଣ୍ୟମପି ତଦ୍ୱତ୍ ସ୍ୟାତ୍ ସଂସ୍କାରୈର୍ବିଧିପୂର୍ବ୍ବକୈଃ ॥ ୨୬ ॥
ପ୍ରାୟଶ୍ଚିତ୍ତଂ ପ୍ରଯଚ୍ଛନ୍ତି ଯେ ଦ୍ୱିଜା ନାମଧାରକାଃ ।
ତେ ଦ୍ୱିଜାଃ ପାପକର୍ମ୍ମାଣଃ ସମେତା ନରକଂ ଯଯୁଃ ॥ ୨୭ ॥

---

ମାତ୍ର ବ୍ରାହ୍ମଣ, ସେମାନେ ସହସ୍ରଶଃ ହେଲେହେଁ ପରିଷଦ୍‌ପଦର ଅଭିଧେୟ ହୋଇପାରନ୍ତି ନାହିଁ । ୨୨ ।

ଯେପରି କାଷ୍ଠନିର୍ମିତ ହସ୍ତୀ, ଯେପରି ଚର୍ମ୍ମମୟ ମୃଗ, ଅଧ୍ୟୟନ ବିହୀନ ବ୍ରାହ୍ମଣହିଁ ସେହିପରି । ଏମାନେ ତିନିଜଣ ନାମମାତ୍ର ଧାରଣ କରନ୍ତି । ଗୁଣ କିଛିହିଁ ଧାରଣ କରନ୍ତି ନାହିଁ । ୨୩ ।

ଶୂନ୍ୟଗ୍ରାମ ଯଦ୍ରୂପ, ନିର୍ଜ୍ଜଳକୂପ ଯଦ୍ରୂପ, ଅଗ୍ନିବ୍ୟତିରିକ୍ତ ଭସ୍ମାଦିରେ ହୋମ ଯଦ୍ରୂପ, ମନ୍ତ୍ରାନଭିଜ୍ଞ ବ୍ରାହ୍ମଣହିଁ ତଦ୍ରୂପ ନିଷ୍ଫଳ, । ୨୪ ।

ଯେମନ୍ତ କାମିନୀସମ୍ଭୋଗବିଷୟରେ ନପୁଂସକ ନିଷ୍ଫଳ, ଯେମନ୍ତ ମରୁଭୂମି ନିଷ୍ଫଳା, ଯେମନ୍ତ ମୂର୍ଖରେ ଦାନ ନିଷ୍ଫଳ, ତେମନ୍ତ ବେଦାନଭିଜ୍ଞ ବ୍ରାହ୍ମଣ ନିଷ୍ଫଳ । ୨୫ ।

ଯେପରି ଚିତ୍ରକର୍ମ୍ମ ବହୁବିଧ ଅଙ୍ଗ ପ୍ରତ୍ୟଙ୍ଗ ନିର୍ମ୍ମାଣଦ୍ୱାରା କ୍ରମଶଃ ଉନ୍ମୀଳିତ ହୁଏ, ସେହିପରି ବିଧିବିହିତ ନାନା ସଂସ୍କାରଦ୍ୱାରା ବ୍ରାହ୍ମଣତ୍ୱ ହୋଇଥାଏ । ୨୬ ।

ଯେଉଁମାନେ ନାମମାତ୍ର ବ୍ରାହ୍ମଣ, ଅର୍ଥାତ୍ ଯେଉଁମାନଙ୍କର ବ୍ରାହ୍ମଣ-ଲକ୍ଷଣ କିଛିହିଁ ନାହିଁ, ଯେଉଁମାନେ ପାପକର୍ମ୍ମରେ ନିରତ, ସେମାନେ ଯେବେ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଦିଅନ୍ତି, ସେମାନେ ନରକକୁ ଗମନ କରନ୍ତି । ୨୭ ।

ଯେ ପଠନ୍ତି ଦ୍ୱିଜା ବେଦଂ ପଞ୍ଚଯଜ୍ଞରତାଶ୍ଚ ଯେ ।
ତ୍ରୈଲୋକ୍ୟଂ ଧାରୟନ୍ତ୍ୟେତେ ପଞ୍ଚେନ୍ଦ୍ରିୟରତାଶ୍ରୟାଃ ॥ ୨୮ ॥
ସମ୍ପ୍ରଣୀତଃ ଶ୍ମଶାନେଷୁ ପାବକୋ ଽଗ୍ନିଃ ସର୍ବଭକ୍ଷକଃ ।
ତଥୈବ ଜ୍ଞାନବାନ୍ ବିପ୍ରଃ ସର୍ବଭକ୍ଷଶ୍ଚ ଦୈବତଂ ॥ ୨୯ ॥
ଅମେଧ୍ୟାନି ଚ ସର୍ବାଣି ପ୍ରକ୍ଷିପନ୍ତ୍ୟୁଦକେ ଯଥା ।
ତଥୈବ କଲ୍ମଷଂ ସର୍ବଂ ପ୍ରକ୍ଷେପ୍ତବ୍ୟଂ ଦ୍ୱିଜେ ଽମଲେ ॥ ୩୦ ॥
ଗାୟତ୍ରୀରହିତୋ ବିପ୍ରଃ ଶୂଦ୍ରାଦପ୍ୟଶୁଚିର୍ଭବେତ୍ ।
ଗାୟତ୍ରୀବ୍ରହ୍ମତତ୍ତ୍ୱଜ୍ଞାଃ ସମ୍ପୂଜ୍ୟନ୍ତେ ଦ୍ୱିଜୋତ୍ତମାଃ ॥ ୩୧ ॥
ଦୁଃଶୀଲୋ ଽପି ଦ୍ୱିଜଃ ପୂଜ୍ୟୋ ନ ଶୂଦ୍ରୋ ବିଜିତେନ୍ଦ୍ରିୟଃ ।
କଃ ପରିତ୍ୟଜ୍ୟ ଦୁଷ୍ଟାଂ ଗାଂ ଦୁହେଚ୍ଛୀଲବତୀଂ ଖରୀଂ ॥ ୩୨ ॥
ଧର୍ମଶାସ୍ତ୍ରରଥାରୂଢ଼ା ବେଦଖଡ୍ଗଧରା ଦ୍ୱିଜାଃ ।
କ୍ରୀଡ଼ାର୍ଥମପି ଯଦ୍ବ୍ରୂୟୁଃ ସ ଧର୍ମଃ ପରମଃ ସ୍ମୃତଃ ॥ ୩୩ ॥

---

ଯେଉଁ ସମସ୍ତ ବ୍ରାହ୍ମଣ ବେଦପାଠ କରନ୍ତି, ଯେଉଁମାନେ ପଞ୍ଚଯଜ୍ଞରେ ନିରତ, ସେମାନେ ପଞ୍ଚେନ୍ଦ୍ରିୟପରାୟଣ ମନୁଷ୍ୟଗଣଙ୍କର ଆଶ୍ରୟ । ସେମାନେହିଁ ଏହି ତ୍ରୈଲୋକ୍ୟ ରକ୍ଷା କରିଅଛନ୍ତି । ୨୮ ।

ଯେପରି ମନ୍ତ୍ରଦ୍ୱାରା ସଂସ୍କୃତହୁତାଶନ ଶ୍ମଶାନସ୍ଥ ହୋଇ ସର୍ବଭକ୍ଷ ହୁଅନ୍ତି, ସେହିପରି ବ୍ରହ୍ମଜ୍ଞାନଦ୍ୱାରା ସଂସ୍କୃତ ବ୍ରାହ୍ମଣ ସର୍ବଭକ୍ଷ ଓ ଦେବତାରୂପୀ । ୨୯ ।

ଯେପରି ଅପବିତ୍ର ବସ୍ତୁ ସମୁଦାୟ ଜଳମଧ୍ୟରେ ନିକ୍ଷେପ କରନ୍ତି, ସେହିପରି ସକଳପାପ ନିର୍ମଳବ୍ରାହ୍ମଣଙ୍କଠାରେ ନିକ୍ଷେପ କରିବ । ୩୦ ।

ଗାୟତ୍ରୀହୀନ ବ୍ରାହ୍ମଣ ଶୂଦ୍ର ଅପେକ୍ଷା ଅଶୁଚି ଏବଂ ଅଧମ । ଯେସମସ୍ତ ବ୍ରାହ୍ମଣ ଗାୟତ୍ରୀନିଷ୍ଠ ଓ ବ୍ରହ୍ମତତ୍ତ୍ୱଜ୍ଞ, ସେମାନେ ପୂଜ୍ୟ ଏବଂ ବ୍ରାହ୍ମଣଶ୍ରେଷ୍ଠ । ୩୧ ।

ବ୍ରାହ୍ମଣ ଦୁଃଶୀଲ ହେଲେ ତାହାଙ୍କର ପୂଜା କରିବ, ମାତ୍ର ଜିତେନ୍ଦ୍ରିୟ ଶୂଦ୍ରର ପୂଜା କରିବ ନାହିଁ । କୌଣସି ବ୍ୟକ୍ତି ଦୁଃଶୀଳା ଗାଈ ପରିତ୍ୟାଗ କରି ସୁଶୀଳା ଗର୍ଦ୍ଦଭୀ ଦୋହନ କରିବାକୁ ପ୍ରବୃତ୍ତ ହୁଏ? । ୩୨ ।

ଯେଉଁ ବ୍ରାହ୍ମଣ ଧର୍ମଶାସ୍ତ୍ରରୂପ ରଥରେ ଆରୋହଣପୂର୍ବକ ବେଦରୂପ ଖଡ୍ଗ ଧାରଣ କରିଅଛନ୍ତି, ସେ ପରିହାସପୂର୍ବକ ଯାହା ବୋଲିବେ, ତାହା ପରମଧର୍ମବୋଲି ଜାଣିବ । ୩୩ ।

ଚତୁର୍ବେଦୋ ବିକଳ୍ପୀ ଚ ଅଙ୍ଗବିଦ୍ଧର୍ମପାଠକଃ ।
ପ୍ରଧାନାଶ୍ରମିଣୋ ମୁଖ୍ୟାଃ ପର୍ଷତ୍ ସ୍ୟାଦ୍ଦଶାବରାଃ ॥ ୩୪ ॥
ରାଜ୍ଞଂ ଚାନୁମତଂ ଚୈବ ପ୍ରାୟଶ୍ଚିତ୍ତଂ ଦ୍ୱିଜୋ ବଦେତ୍ ।
ସ୍ୱୟମେବ ନ ବକ୍ତବ୍ୟା ପ୍ରାୟଶ୍ଚିତ୍ତସ୍ୟ ନିଷ୍କୃତିଃ ॥ ୩୫ ॥
ବ୍ରାହ୍ମଣାଂସ୍ତୁ ବ୍ୟତିକ୍ରମ୍ୟ ରାଜା ଯତ୍ କର୍ତ୍ତୁମିଚ୍ଛତି ।
ତତ୍ପାପଂ ଶତଧା ଭୂତ୍ୱା ରାଜାନମୁପଗଚ୍ଛତି ॥ ୩୬ ॥
ପ୍ରାୟଶ୍ଚିତ୍ତଂ ସଦା ଦଦ୍ୟାଦ୍ଦେବତାୟତନାଗ୍ରତଃ ।
ଆତ୍ମାନଂ ପାବୟେତ୍ ପଶ୍ଚାଜ୍ଜପନ୍ ବୈ ବେଦମାତରଂ ॥ ୩୭ ॥
ସଶିଖଂ ବପନଂ କୃତ୍ୱା ତ୍ରିସନ୍ଧ୍ୟମବଗାହନଂ ।
ଗବାଂ ଗୋଷ୍ଠେ ବସେଦ୍ରାତ୍ରୌ ଦିବା ତାଃ ସମନୁବ୍ରଜେତ୍ ॥ ୩୮ ॥
ଉଷ୍ଣେ ବର୍ଷତି ଶୀତେ ବା ମାରୁତେ ବାତି ବା ଭୃଶଂ ।
ନ କୁର୍ବୀତାତ୍ମନସ୍ତ୍ରାଣଂ ଗୋରକୃତ୍ୱା ତୁ ଶକ୍ତିତଃ ॥ ୩୯ ॥

---

ଯେ ଚତୁର୍ବେଦବିଶାରଦ ନିର୍ବିକଳ୍ପ ବୁଦ୍ଧିଯୁକ୍ତ, ବେଦାଙ୍ଗବିତ୍ ଧର୍ମ୍ମପାଠକ ଓ ପ୍ରାଜ୍ଞ, ସେ ଏକାକୀ ଉତ୍କୃଷ୍ଟ ପରିଷଦ ହୋଇପାରନ୍ତି । ଅଥବା ଦଶଜଣ ପ୍ରଧାନ ଆଶ୍ରମୀ ମଧ୍ୟମପରିଷଦ ହୁଅନ୍ତି । ୩୪ ।

ବ୍ରାହ୍ମଣ ରାଜାଙ୍କ ଅନୁମତିକ୍ରମରେ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଦେବେ । ସ୍ୱୟଂ କେତେବେଳେ ବ୍ୟବସ୍ଥା ଦେବେ ନାହିଁ । ୩୫ ।

ଯେବେ ରାଜା ବ୍ରାହ୍ମଣଙ୍କ ସମ୍ମତି ନ ନେଇ କୌଣସି ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଦଅନ୍ତି, ତାହା ହେଲେ ସେହି ପାପ ଶତଗୁଣ ହୋଇ ରାଜାଙ୍କ ଶରୀରରେ ସଞ୍ଚାରିତ ହୋଇ ଥାଏ । ୩୬ ।

ବ୍ରାହ୍ମଣ ଦେବାଳୟସମ୍ମୁଖେ ଥାଇ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଦେବେ, ପଶ୍ଚାତ୍ ସେ ବେଦମାତା ଗାୟତ୍ରୀ ଜପ କରି ଆପଣାକୁ ପବିତ୍ର କରିବେ ।୩୭।

ପ୍ରାୟଶ୍ଚିତ୍ତାନୁଷ୍ଠାନ ସମୟରେ ପ୍ରଥମତଃ ଶିଖାସମେତ ସମୁଦାୟ କେଶ ବପନ କରିବ । ପରେ ତ୍ରିସନ୍ଧ୍ୟା ଅବଗାହନପୂର୍ବକ ଦିବାଭାଗରେ ଗାଭୀର ଅନୁଗମନ କରିବ, ରାତ୍ରିକାଳରେ ଗୋଶାଳାରେ ଶୟନ କରିଥିବ ।୩୮।

ଯେବେ ପ୍ରଚଣ୍ଡ ଉଷ୍ଣବାୟୁ ବା ଦାରୁଣ ଶୀତଳବାୟୁ ବା ଭୀଷଣ ଝଡ଼ ପ୍ରବାହିତ ହୁଏ, ଅଥବା ସାତିଶୟ ବୃଷ୍ଟି ହୋଇଥାଏ, ତଥାପି କୌଣସି ମତରେ ଆତ୍ମରକ୍ଷା କରିବ ନାହିଁ । ପ୍ରାଣପଣରେ ଗୋରକ୍ଷା କରୁଥିବ । ଗୋରକ୍ଷାନନ୍ତର ଆତ୍ମରକ୍ଷା ହୋଇପାରେ । ୩୯ ।

ଆତ୍ମନୋ ଯଦି ବାନ୍ୟେଷାଂ ଗୃହେ କ୍ଷେତ୍ରେ ଽଥବା ଖଳେ ।
ଭକ୍ଷୟନ୍ତୀଂ ନ କଥୟେତ୍ ପିବନ୍ତଂ ଚୈବ ବତ୍ସକଂ । ୪୦ ।
ପିବନ୍ତୀଷୁ ପିବେତ୍ତୋୟଂ ସଂବିଶନ୍ତୀଷୁ ସଂବିଶେତ୍ ।
ପତିତାଂ ପଙ୍କମଗ୍ନାଂ ବା ସର୍ବପ୍ରାଣୈଃ ସମୁଦ୍ଧରେତ୍ । ୪୧ ।
ବ୍ରାହ୍ମଣାର୍ଥେ ଗବାର୍ଥେ ବା ଯସ୍ତୁ ପ୍ରାଣାନ୍ ପରିତ୍ୟଜେତ୍ ।
ମୁଚ୍ୟତେ ବ୍ରହ୍ମହତ୍ୟାଦ୍ୟୈର୍ଗୋପ୍ତା ଗୋବ୍ରାହ୍ମଣସ୍ୟ ଚ । ୪୨ ।
ଗୋବଧସ୍ୟାନୁରୂପେଣ ପ୍ରାଜାପତ୍ୟଂ ବିନିର୍ଦ୍ଦିଶେତ୍ ।
ପ୍ରାଜାପତ୍ୟଂ ତୁ ଯତ୍ କୃଚ୍ଛ୍ରଂ ବିଭଜେତଚ୍ଚତୁର୍ବ୍ବିଧଂ । ୪୩ ।
ଏକାହମେକଭକ୍ତାଶୀ ଏକାହଂ ନକ୍ତଭୋଜନଃ ।
ଅଯାଚିତାଶ୍ୟେକମହରେକାହଂ ମାରୁତାଶନଃ । ୪୪ ।
ଦିନଦ୍ୱୟଂ ଚୈକଭକ୍ତୋ ଦ୍ୱିଦିନଂ ନକ୍ତଭୋଜନଃ ।
ଦିନଦ୍ୱୟମଯାଚୀ ସ୍ୟାଦ୍ଦ୍ୱିଦିନଂ ମାରୁତାଶନଃ ।୪୫ ।

---

ଯେବେ ଆପଣାର ବା ଅନ୍ୟର ଗୃହରେ, କ୍ଷେତ୍ରରେ ଅଥବା ଉଦୂଖଳରେ (ଖଳାରେ) ଗାଈ କୌଣସି ଶସ୍ୟାଦି ଭକ୍ଷଣ କରେ ତାହା ଦେଖିଲେ କିଛି ବୋଲିବ ନାହିଁ, ଏବଂ ବତ୍ସ ଯେବେ ଗାଈସ୍ତନ ପାନକରେ, ତାହା ଦେଖିଲେ କିଛି ବୋଲିବ ନାହିଁ । ୪୦ ।

ଗାଈ ଜଳପାନ କଲେ ପଶ୍ଚାତ୍ ଆପଣ ଜଳପାନ କରିବ । ଗାଈ ଶୟନ କଲେ ପଶ୍ଚାତ୍ ଆପଣ ଶୟନ କରିବ । ଯେବେ ଗାଈ ପଡ଼ିଯାଏ ବା ପଙ୍କରେ ନିମଗ୍ନ ହୁଏ, ତାହା ଦେଖିଲେ ସକଳଶକ୍ତି ପ୍ରୟୋଗପୂର୍ବକ ତାହାକୁ ଉଦ୍ଧାର କରିବ । ୪୧ ।

ଯେ ବ୍ୟକ୍ତି ଗୋବ୍ରାହ୍ମଣନିମିତ୍ତ ପ୍ରାଣ ପରିତ୍ୟାଗ କରେ, ଅଥବା ଯେବ୍ୟକ୍ତି ଗୋବ୍ରାହ୍ମଣ ରକ୍ଷାନିମିତ୍ତ ଆପଣା ଜୀବନର ମମତା ନ କରେ, ସେ ବ୍ରହ୍ମହତ୍ୟାପ୍ରଭୃତି ସକଳ ପାପରୁ ମୁକ୍ତ ହୁଏ । ୪୨ ।

ଗୋବଧପ୍ରାୟଶ୍ଚିତ୍ତନିମିତ୍ତ ଗୋଟିଏ ପ୍ରାଜାପତ୍ୟ ବ୍ୟବସ୍ଥା କରିବ । ପ୍ରାଜାପତ୍ୟ ନାମକ କୃଚ୍ଛ୍ରବ୍ରତକୁ ଚାରିଭାଗରେ ବିଭକ୍ତ କରିବ । ୪୩ ।

ଏକଦିବସ ଏକଭକ୍ତ ଅର୍ଥାତ୍ ଏକପାକରେ ଭୋଜନ କରିବ । ଏକଦିବସ ରାତ୍ରିରେ ଭୋଜନ କରିବ । ଏକଦିବସ ଅଯାଚିତ ଦ୍ରବ୍ୟ ଭୋଜନ କରିବ । ଏକଦିବସ ବାୟୁଭୋଜନ କରିବ । ୪୪ ।

ଦ୍ୱିତୀୟପ୍ରକାର ପ୍ରାଜାପତ୍ୟ ଏହିପରି ଯେ ଦୁଇଦିବସ ଏକପାକରେ

ତ୍ରିଦିନଞ୍ଚୈକଭକ୍ତାଶୀ ତ୍ରିଦିନଂ ନକ୍ତଭୋଜନଃ ।
ଦିନତ୍ରୟମୟାଚୀ ସ୍ୟାତ୍ତ୍ରିଦିନଂ ମାରୁତାଶନଃ ॥ ୪୬ ॥
ଚତୁରହନ୍ତ୍ୱେକଭକ୍ତାଶୀ ଚତୁରହଂ ନକ୍ତଭୋଜନଃ ।
ଚତୁର୍ଦ୍ଦିନମୟାଚୀ ସ୍ୟାଚ୍ଚତୁରହଂ ମାରୁତାଶନଃ ॥ ୪୭ ॥
ପ୍ରାୟଶ୍ଚିତ୍ତେ ତୁ ସମ୍ପୂର୍ଣ୍ଣେ କୁର୍ଯ୍ୟାଦ୍‌ବ୍ରାହ୍ମଣଭୋଜନଂ ।
ବିପ୍ରାୟ ଦକ୍ଷିଣାଂ ଦଦ୍ୟାତ୍ତୁ ପବିତ୍ରାଣି ଜପେଦ୍ଦ୍ୱିଜଃ ॥ ୪୮ ॥
ବ୍ରାହ୍ମଣାନ୍ ଭୋଜୟିତ୍ୱା ତୁ ଗୋଘ୍ନଃ ଶୁଦ୍ଧୋ ନ ସଂଶୟଃ ॥ ୪୯ ॥

ଇତି ପାରାଶରେ ଧର୍ମ୍ମଶାସ୍ତ୍ରେ ଅଷ୍ଟମୋଽଧ୍ୟାୟଃ ।

---

ଖାଇବ, ଦୁଇଦିବସ ରାତ୍ରରେ ଭୋଜନ କରିବ । ଦୁଇଦିବସ ଅଯାଚିତଦ୍ରବ୍ୟ ଭକ୍ଷଣ କରିବ, ଦୁଇଦିବସ ବାୟୁ ଭକ୍ଷଣ କରିଥିବ । ୪୫ ।

ତୃତୀୟ ପ୍ରକାର ପ୍ରାଜାପତ୍ୟ ଏହିରୂପେ ଯେ, ତିନଦିବସ ଏକପାକରେ ଖାଇବ, ତିନଦିନ ରାତ୍ରିରେ ଭୋଜନ କରିବ, ତିନଦିନ ଅଯାଚିତଦ୍ରବ୍ୟ ଆହାର କରିବ, ତିନଦିନ ବାୟୁ ଭକ୍ଷଣ କରିବ । ୪୬ ।

ଚତୁର୍ଥପ୍ରକାର ପ୍ରାଜାପତ୍ୟର ଲକ୍ଷଣ ଏହି ଯେ, ଚାରିଦିବସ ଏକପାକରେ ଖାଇବ, ଚାରିଦିବସ ରାତ୍ରିରେ ଭୋଜନ କରିବ, ଚାରିଦିବସ ଅଯାଚିତଦ୍ରବ୍ୟରେ ଜୀବନ ରକ୍ଷା କରିବ, ଚାରିଦିବସ ବାୟୁ ଭକ୍ଷଣ କରିବ । ୪୭ ।

ଏହିରୂପେ ପ୍ରାୟଶ୍ଚିତ୍ତକରଣ ସମ୍ପୂର୍ଣ୍ଣ ହେଲେ ବ୍ରାହ୍ମଣଭୋଜନ କରାଇ ବ୍ରାହ୍ମଣମାନଙ୍କୁ ଦକ୍ଷିଣା ପ୍ରଦାନ କରିବ । ବ୍ରାହ୍ମଣଗଣ ପବିତ୍ର ମନ୍ତ୍ର ଜପ କରିବେ । ୪୮ ।

ଗୋହତ୍ୟାକାରୀ ବ୍ରାହ୍ମଣଗଣଙ୍କୁ ଭୋଜନ କରାଇ ଶୁଦ୍ଧିଲାଭ କରିବେ, ସନ୍ଦେହ ନାହିଁ । ୪୯ ।

ପରାଶର-ସଂହିତା ଅଷ୍ଟମ ଅଧ୍ୟାୟ ।

---

## ନବମ ଅଧ୍ୟାୟ ।

ଗବାଂ ସଂରକ୍ଷଣାର୍ଥାୟ ନ ଦୁଷ୍ୟେଦ୍ରୋଧବନ୍ଧୟୋଃ ।
ତଦ୍ବଧଂ ତୁ ନ ତଂ ବିଦ୍ୟାତ୍ କାମାକାମକୃତନ୍ତଥା ॥ ୧ ॥
ଅଙ୍ଗୁଷ୍ଠମାତ୍ରଃ ସ୍ଥୂଳୋବା ବାହୁମାତ୍ରଃ ପ୍ରମାଣତଃ ।
ଆର୍ଦ୍ରସ୍ତୁ ସପଲାଶଶ୍ଚ ଦଣ୍ଡଇତ୍ୟଭିଧୀୟତେ ॥ ୨ ॥
ଦଣ୍ଡାଦୂର୍ଦ୍ଧ୍ୱଂ ଯଦନ୍ୟେନ ପ୍ରହରେଦ୍‌ବା ନିପାତୟେତ୍ ।
ପ୍ରାୟଶ୍ଚିତ୍ତଂ ଚରେତ୍ ପ୍ରୋକ୍ତଂ ଦ୍ୱିଗୁଣଂ ଗୋବ୍ରତଞ୍ଚରେତ୍ ॥ ୩ ॥
ରୋଧବନ୍ଧନଯୋକ୍ତ୍ରାଣି ଘାତନଞ୍ଚ ଚତୁର୍ବିଧଂ ।
ଏକପାଦଞ୍ଚରେଦ୍ରୋଧେ ଦ୍ୱିପାଦଂ ବନ୍ଧନେ ଚରେତ୍ ॥ ୪ ॥
ଯୋକ୍ତ୍ରେଷୁ ପାଦହୀନଂ ସ୍ୟାଚ୍ଚରେତ୍ ସର୍ବଂ ନିପାତନେ ।
ଗୋଚରେ ଚ ଗୃହେ ବାପି ଦୁର୍ଗେଷ୍ୱପି ସମେଷ୍ୱପି ॥ ୫ ॥

---

ଗୋରୁ ରକ୍ଷା ନିମିତ୍ତ ଯେବେ ଗୋରୁକୁ ରୁନ୍ଧି କରି ରଖାଯାଏ, ବା ବନ୍ଧନ କରାଯାଏ, ତାହା ହେଲେ ଦୋଷ ହେବ ନାହିଁ । ସେହି ଅବସ୍ଥାରେ ଯେବେ ଗୋରୁର ମୃତ୍ୟୁ ହୁଏ, ତାହା ହେଲେ ତାହା କାମକୃତ ବା ଅକାମକୃତ ବଧ ହେବ ନାହିଁ । ୧ ।

ଏକ ଅଙ୍ଗୁଷ୍ଠ ସ୍ଥୂଳ, ଏକହସ୍ତ ଦୀର୍ଘ, କଞ୍ଚା ଓ ପତ୍ରଯୁକ୍ତ ଶାଖାକୁ ଦଣ୍ଡ ବୋଲାଯାଏ । ୨ ।

ଯେବ୍ୟକ୍ତି ଉକ୍ତ ନିର୍ଦ୍ଦିଷ୍ଟ ଦଣ୍ଡ ଅପେକ୍ଷା ଦୀର୍ଘ ଯଷ୍ଟିଦ୍ୱାରା ଗୋରୁକୁ ପ୍ରହାର କରିବ, ତାହାକୁ ପ୍ରାୟଶ୍ଚିତ୍ତ କରିବାକୁ ହେବ । ଯେବେ ସେହି ଯଷ୍ଟି ପ୍ରହାରରେ ଗୋରୁର ମୃତ୍ୟୁ ହୁଏ, ତାହା ହେଲେ ଦ୍ୱିଗୁଣ ଗୋବ୍ରତର ଅନୁଷ୍ଠାନ କରିବାକୁ ହେବ । ୩ ।

ଗୋରୁ ରୋଧ, ବନ୍ଧନ, ଯୋତ, ପ୍ରହାର, ଏହି ଚତୁର୍ବିଧ ପ୍ରାୟଶ୍ଚିତ୍ତର ସ୍ଥଳ ହେଉଅଛି । ଗୋରୁକୁ ରୋଧ କଲେ ଏକପାଦ, ବନ୍ଧନ କଲେ ଦ୍ୱିପାଦ । ୪ ।

କୌଣସି ସ୍ଥାନରେ ଯୋତ ଦେଲେ ତ୍ରିପାଦ, ପ୍ରହାରଦ୍ୱାରା ବଧ କଲେ ସମ୍ପୂର୍ଣ୍ଣ ଚତୁଷ୍ପାଦ ପ୍ରାୟଶ୍ଚିତ୍ତ କରିବାକୁ ହେବ । ଯେବେ ଗୋରୁ ଗୋପ୍ରଚାର ସ୍ଥାନରେ, ଗୃହରେ, ଦୁର୍ଗମସ୍ଥାନରେ, ସମଭୂମିରେ । ୫ ।

ନଦୀଷ୍ୱପି ସମୁଦ୍ରେଷୁ ଖାତେଽପ୍ୟଥ ଦରୀମୁଖେ ।
ଦଗ୍ଧଦେଶେ ସ୍ଥିତାଃ ଗାବସ୍ତମ୍ନାଦ୍ରୋଧ ଉଚ୍ୟତେ ॥ ୬ ॥
ଯୋକ୍ତ୍ରଦାମକଡୋରୈଶ୍ଚ ଘଣ୍ଟାଭରଣଭୂଷଣୈଃ ।
ଗୃହେ ବାପି ବନେ ବାପି ବଦ୍ଧା ସ୍ୟାଦ୍ଗୌର୍ମୃତା ଯଦ ।
ତଦେବ ବନ୍ଧନଂ ବଦ୍ୟାତ୍ କାମାକାମକୃତଞ୍ଚ ଯତ୍ ॥ ୭ ॥
ମୃଲ୍ଲେଖେ ଶକଟେ ପଂକ୍ତ୍ୟୌ ଭରେ ବା ପୀଡ଼ିତୋ ନରୈଃ ।
ଗୋପତିର୍ମୃତ୍ୟୁମାପ୍ନୋତି ଯୋକ୍ତ୍ରୋ ଭବତି ତଦ୍ବଧଃ ॥ ୮ ॥
ମତ୍ତଃ ପ୍ରମତ୍ତ ଉନ୍ମତ୍ତଶ୍ଚେତନୋ ବାପ୍ୟଚେତନଃ ।
କାମାକାମକୃତକ୍ରୋଧୋ ଦଣ୍ଡୈର୍ହନ୍ୟାଦଥୋପଲୈଃ ।
ପ୍ରହତା ବା ମୃତା ବାପି ତଦ୍ଧି ହେତୁର୍ନିପାତନେ । ୯ ।
ମୂର୍ଚ୍ଛିତଃ ପତିତୋ ବାପି ଦଣ୍ଡେନାଭିହତଃ ସ ତୁ ।
ଉତ୍ଥିତସ୍ତୁ ଯଦା ଗଚ୍ଛେତ୍ ପଞ୍ଚ ସପ୍ତ ଦଶୈବ ବା । ୧୦ ।

---

ନଦୀରେ ସମୁଦ୍ରରେ ଖାତମଧ୍ୟରେ ଗୁହାମୁଖରେ ବା ଦଗ୍ଧଦେଶରେ ଥାଏ, ତାହାକୁ ସେ ସ୍ଥାନରୁ ସ୍ଥାନାନ୍ତରରେ ଯିବାକୁ ନ ଦିଆ ଯାଏ ଓ ସେହି ଅବସ୍ଥାରେ ତାହାର ମୃତ୍ୟୁ ହୁଏ. ତାହା ହେଲେ ତାହାକୁ ରୋଧ ବୋଲାଯାଏ । ୬ ।

ରଜ୍ଜୁକୋତର ଦଉଡ଼ି ଘଣ୍ଟା ଅଭରଣ ଭୂଷଣ, ଏହି ସମୁଦାୟ ବଦ୍ଧଗୋରୁ ଯେବେ ଗୃହମଧ୍ୟରେ ଅଥବା ବନରେ ପଞ୍ଚତ୍ୱ ପ୍ରାପ୍ତ ହୁଏ, ତାହା ହେଲେ ତାହାକୁ ବନ୍ଧନ ବୋଲାଯାଏ । ଏହି ବନ୍ଧନ ଦୁଇପ୍ରକାର କାମକୃତ ଓ ଅକାମକୃତ । ୭ ।

ଯେବେ ଲାଙ୍ଗଳରେ ଶକଟରେ ଗୋ ପଂକ୍ତିରେ ପୀଡିତ ଅଥବା ଭାରଦ୍ୱାରା ପ୍ରପୀଡିତ ଗୋରୁ ମୃତ୍ୟୁମୁଖରେ ପତିତ ହୁଏ, ତାହା ନାମ ଯୋକ୍ତ୍ର ବା ଯୋତବଧ । ୮ ।

ଯେବେ ମତ୍ତ ହୋଇ ପ୍ରମତ୍ତ ହୋଇ ଉନ୍ମତ୍ତ ହୋଇ ଚେତନ ହୋଇ କାମକୃତ ବା ଅକାମକୃତ ସହକାରରେ ଦଣ୍ଡଦ୍ୱାରା ବା ଉପଲଦ୍ୱାରା ଗୋରୁକୁ ପ୍ରହାର କରେ । ୯ ।

ତହିଁରେ ଯେବେ ଗୋରୁ ଗୁରୁତର ଆହତ ବା ମୃତ ହୁଏ, ତାହା ହେଲେ ତାହାକୁ ନିପାତନ ବା ପ୍ରହାରଦ୍ୱାରା ଗୋହତ୍ୟା ବୋଲି ଯାଇ ପାରେ । ଯେବେ ଗୋରୁ ଦଣ୍ଡଦ୍ୱାରା ଆହତ ହୋଇ ମୂର୍ଚ୍ଛିତ ଓ ପତିତ ହୁଏ, ଏବଂ ସେହି ଗୋରୁ ଯେବେ । ୧୦ ।

ଗ୍ରାସଂ ବା ଯଦ୍‌ଗୃହ୍ଣୀୟାତ୍ତୋୟଂ ବାପି ପିବେଦ୍ଯଦି । ୧୧ ।
ପୂର୍ବବ୍ୟାଧ୍ୟପସୃଷ୍ଟଶ୍ଚେତ୍ ପ୍ରାୟଶ୍ଚିତ୍ତଂ ନ ବିଦ୍ୟତେ । ୧୨ ।
ପିଣ୍ଡସ୍ଥେ ପାଦମେକନ୍ତୁ ଦ୍ୱୌ ପାଦୌ ଗର୍ଭସନ୍ନିଭେ ।
ପାଦୋନଂ ବ୍ରତମୁଦ୍ଦିଷ୍ଟଂ ହତ୍ୱା ଗର୍ଭମଚେତନଂ । ୧୩ ।
ପାଦେଽଙ୍ଗରୋମବପନଂ ଦ୍ୱିପାଦେ ଶ୍ମଶ୍ରୁଣୋଽପି ଚ ।
ତ୍ରିପାଦେ ତୁ ଶିଖାବର୍ଜ୍ଜଂ ସଶିଖନ୍ତୁ ନିପାତନେ । ୧୪ ।
ପାଦେ ବସ୍ତ୍ରଯୁଗଂ ଚୈବ ଦ୍ୱିପାଦେ କାଂସ୍ୟଭାଜନଂ ।
ପାଦୋନେ ଗୋବୃଷଂ ଦଦ୍ୟାଚ୍ଚତୁର୍ଥେ ଗୋଦ୍ୱୟଂ ସ୍ମୃତଂ । ୧୫ ।
ନିଷ୍ପନ୍ନସର୍ବଗାତ୍ରସ୍ତୁ ଦୃଶ୍ୟତେ ବା ସଚେତନଂ ।
ଅଙ୍ଗପ୍ରତ୍ୟଙ୍ଗସମ୍ପନ୍ନେ ଦ୍ୱିଗୁଣଂ ଗୋବ୍ରତଂ ଚରେତ୍ । ୧୬ ।

---

ଉତ୍ଥିତ ହୋଇ ଗମନ କରେ ଓ ପାଞ୍ଚଗ୍ରାସ ସାତଗ୍ରାସ ବା ଦଶଗ୍ରାସ ଘାସାଦି ଭକ୍ଷଣ କରେ ଅଥବା ଯେବେ ଜଳପାନ କରେ । ୧୧ ।

ଅର୍ଥାତ୍ ଯେବେ ସେହି ଗୋରୁ ପ୍ରହାରାଦି ଜନିତ ପୀଡ଼ାରୁ ମୁକ୍ତ ହୁଏ, ତାହା ହେଲେ ପ୍ରାୟଶ୍ଚିତ୍ତ କରିବାକୁ ହେବ ନାହିଁ । ୧୨ ।

ପିଣ୍ଡାକାର ଗୋଗର୍ଭ ନଷ୍ଟ କଲେ ଏକପାଦ ଗର୍ଭସ୍ଥ ବତ୍ସର ହସ୍ତ ପାଦାଦି ହେଲେ ଦ୍ୱିପାଦ, ଚୈତନ୍ୟହୀନ ନଷ୍ଟ କଲେ ତ୍ରିପାଦ ବ୍ରତ ଆଚରଣ କରିବାକୁ ହେବ । ୧୩ ।

ଏକପାଦ ପ୍ରାୟଶ୍ଚିତ୍ତ କରିବାକୁ ହେଲେ ଅଙ୍ଗର ଲୋମ ମୁଣ୍ଡନ କରିବାକୁ ହେବ । ଦ୍ୱିପାଦ ପ୍ରାୟଶ୍ଚିତ୍ତ କରିବାକୁ ହେଲେ ଶିଖା ଭିନ୍ନ ସମୁଦାୟ ମୁଣ୍ଡନ କରିବ, ନିପାତନ ହେଲେ ଅର୍ଥାତ୍ ଚତୁଷ୍ପାଦ ପ୍ରାୟଶ୍ଚିତ୍ତ କରିବାକୁ ହେଲେ ଆପାଦମସ୍ତକ ଶିଖାପର୍ଯ୍ୟନ୍ତ ସମୁଦାୟ ମୁଣ୍ଡନ କରି ପକାଇବ । ୧୪ ।

ଏକପାଦ ପ୍ରାୟଶ୍ଚିତ୍ତ କରିବା ସମୟରେ ବସ୍ତ୍ରଯୁଗଳ, ଦୁଇପାଦ ପ୍ରାୟଶ୍ଚିତ୍ତ କରିବା ସମୟରେ କାଂସ୍ୟପାତ୍ର, ତିନପାଦ ପ୍ରାୟଶ୍ଚିତ୍ତ କରିବା ସମୟରେ ଏକ ବୃଷ, ସମ୍ପୂର୍ଣ୍ଣ ଚତୁଷ୍ପାଦ ପ୍ରାୟଶ୍ଚିତ୍ତ କରିବା ସମୟରେ ଗୋ ଯୁଗଳ ପ୍ରଦାନ କରିବ । ୧୫ ।

ଯେବେ ଅଙ୍ଗପ୍ରତ୍ୟଙ୍ଗ ସମ୍ପନ୍ନ ଗୋରୁର ସର୍ବାଙ୍ଗ ଭଗ୍ନ କରିଦିଏ ଏବଂ ସେହି ଗୋରୁର ଯେବେ ଚୈତନ୍ୟ ଥାଏ, ତାହା ହେଲେ ଦ୍ୱିଗୁଣ ବ୍ରତ କରିବାକୁ ହେବ । ୧୬ ।

ପାଷାଣେନୈବ ଦଣ୍ଡେନ ଗାବୋ ଯେନାଭିପାତିତାଃ ।
ଶୃଙ୍ଗଭଙ୍ଗେ ଚରେତ୍ ପାଦଂ ଦ୍ୱୌ ପାଦୌ ନେତ୍ର ଘାତନେ ॥୧୭॥
ଲାଙ୍ଗୂଲେ କୃଚ୍ଛ୍ର ପାଦନ୍ତୁ ଦ୍ୱୌ ପାଦାବସ୍ଥିଭଞ୍ଜନେ ।
ତ୍ରିପାଦମ୍ଚୈବ କର୍ଣ୍ଣେ ତୁ ଚରେତ୍ ସର୍ବଂ ନିପାତନେ ॥ ୧୮ ॥
ଶୃଙ୍ଗଭଙ୍ଗେଽସ୍ଥିଭଙ୍ଗେ ଚ କଟିଭଙ୍ଗେ ତଥୈବ ଚ ।
ଯଦି ଜୀବତି ଷଣ୍ମାସାନ୍ ପ୍ରାୟଶ୍ଚିତ୍ତଂ ନ ବିଦ୍ୟତେ ॥ ୧୯ ॥
ବ୍ରଣଭଙ୍ଗେ ଚ କର୍ତ୍ତବ୍ୟଃ ସ୍ନେହାଭ୍ୟଙ୍ଗସ୍ତୁ ପାଣିନା ।
ଯବସଶ୍ଚୋପହର୍ତ୍ତବ୍ୟୋ ଯାବଦ୍ଦୃଢ଼ବଲୋ ଭବେତ୍ ॥ ୨୦ ॥
ଯାବତ୍ ସମ୍ପୂର୍ଣ୍ଣସର୍ବାଙ୍ଗସ୍ତାବତ୍ତଂ ପୋଷୟେନ୍ନରଃ ।
ଗୋରୂପଂ ବ୍ରାହ୍ମଣସ୍ୟାଗ୍ରେ ନମସ୍କୃତ୍ୟ ବିବର୍ଜ୍ଜୟେତ୍ ॥ ୨୧ ॥

---

କୌଣସି ବ୍ୟକ୍ତି ପାଷାଣଦ୍ୱାରା ବା ଦଣ୍ଡଦ୍ୱାରା ଆଘାତ କଲେ ଯେବେ ତହିଁରେ ଗୋରୁର ଶୃଙ୍ଗ ଭଙ୍ଗ ହୁଏ, ତାହା ହେଲେ ଏକପାଦ ବ୍ରତାନୁଷ୍ଠାନ କରିବ । ଯେବେ ଦୁଇଗୋଟି ନେତ୍ର ନଷ୍ଟ ହୁଏ, ତାହା ହେଲେ ଦୁଇପାଦ ବ୍ରତାନୁଷ୍ଠାନ କରିବାକୁ ହେବ । ୧୭ ।

ଏହିରୂପେ ଲାଙ୍ଗୁଳ ଭଗ୍ନ କରି ଦେଲେ ଏକପାଦ କୃଚ୍ଛ୍ରବ୍ରତ କରିବ । ଅସ୍ଥିଭଙ୍ଗ କରିଦେଲେ ପାଦଦ୍ୱୟ କୃଚ୍ଛ୍ରବ୍ରତାଚରଣ କରିବାକୁ ହେବ । ଗୋରୁର କର୍ଣ୍ଣଚ୍ଛିନ୍ନ କଲେ ତିନପାଦ କୃଚ୍ଛ୍ରବ୍ରତ କରିବ । ସମୁଦାୟ ଅଙ୍ଗ ଭଙ୍ଗ କଲେ ସମ୍ପୂର୍ଣ୍ଣ ଚତୁଷ୍ପାଦ ବ୍ରତାଚରଣ କରିବାକୁ ହେବ । ୧୮ ।

ଶୃଙ୍ଗ ଭଙ୍ଗ ହେଲେ, ଅସ୍ଥି ଭଗ୍ନ ହେଲେ ଅଥବା କଟି ଭଗ୍ନ ହେଲେ, ଯେବେ ଗୋରୁ ଛଅମାସ ପର୍ଯ୍ୟନ୍ତ ଜୀବିତ ଥାଏ, ତାହା ହେଲେ ପ୍ରାୟଶ୍ଚିତ୍ତ କରିବାକୁ ହେବ ନାହିଁ । ୧୯ ।

ଯେବେ ଅପାତଦ୍ୱାରା ଗୋରୁ ଗାତ୍ରରେ ବ୍ରଣ ହୁଏ, ତାହା ହେଲେ ଯେପର୍ଯ୍ୟନ୍ତ ଆରୋଗ୍ୟ ନ ହେବ ସେପର୍ଯ୍ୟନ୍ତ ଆପଣା ହସ୍ତରେ ସେହି ବ୍ରଣସ୍ଥଳରେ ଘୃତ ତୈଳାଦି ପ୍ରଦାନ କରିବ । ଯେପର୍ଯ୍ୟନ୍ତ ସେହି ଗୋରୁ ଦୃଢ଼ ଓ ବଳବାନ୍ ନ ହୁଏ, ସେପର୍ଯ୍ୟନ୍ତ ଗୋରୁର ନିମନ୍ତେ ଯବସ (ଘାସ) ଆହାର କରିବ । ୨୦ ।

ସେହି ଗୋରୁ ଯେପର୍ଯ୍ୟନ୍ତ ସମ୍ପୂର୍ଣ୍ଣରୂପେ ଆରୋଗ୍ୟ ଲାଭ ନ କରେ, ସେପର୍ଯ୍ୟନ୍ତ ତାହାକୁ ପ୍ରତିପାଳନ କରିବାକୁ ହେବ । ପରେ ବ୍ରାହ୍ମଣଙ୍କୁ ନମସ୍କାର କରି ବ୍ରାହ୍ମଣଙ୍କ ନିକଟରେ ଆପଣାର ଗୋରୂପ ପରିତ୍ୟାଗ କରିବ ୨୧

ଯଦ୍ୟସମ୍ପୂର୍ଣ୍ଣସର୍ବାଙ୍ଗୋ ହୀନଦେହୋ ଭବେତ୍ତଦା ।
ଗୋଘାତକସ୍ୟ ତସ୍ୟାର୍ଦ୍ଧଂ ପ୍ରାୟଶ୍ଚିତ୍ତଂ ବିନିର୍ଦ୍ଦିଶେତ୍ ॥ ୧୨ ॥
କାଷ୍ଠଲୋଷ୍ଟ୍ରକପାଷାଣୈଃ ଶସ୍ତ୍ରେଣୈବୋଦ୍ଧତୋ ବଲାତ୍ ।
ବ୍ୟାପାଦୟତି ଯୋ ଗାଂ ତୁ ତସ୍ୟ ଶୁଦ୍ଧିଂ ବିନିର୍ଦ୍ଦିଶେତ୍ ॥ ୧୩ ॥
ଚରେତ୍ ସାନ୍ତପନଂ କାଷ୍ଠେ ପ୍ରାଜାପତ୍ୟଂ ତୁ ଲୋଷ୍ଟ୍ରକେ ।
ତପ୍ତକୃଚ୍ଛ୍ରଂ ତୁ ପାଷାଣେ ଶସ୍ତ୍ରେ ଚୈବାତିକୃଚ୍ଛ୍ରକଂ ॥ ୧୪ ॥
ପଞ୍ଚ ସାନ୍ତପନେ ଗାବଃ ପ୍ରାଜାପତ୍ୟେ ତଥା ତ୍ରୟଃ ।
ତପ୍ତକୃଚ୍ଛ୍ରେ ଭବନ୍ତ୍ୟଷ୍ଟାବତିକୃଚ୍ଛ୍ରେ ତ୍ରୟୋଦଶ ॥ ୧୫ ॥
ପ୍ରମାପଣେ ପ୍ରାଣଭୃତାଂ ଦଦ୍ୟାତ୍ତତ୍ ପ୍ରତିରୂପକଂ ।
ତସ୍ୟାନୁରୂପଂ ମୂଲ୍ୟଂ ବା ଦଦ୍ୟାଦିତ୍ୟବ୍ରବୀନ୍ମନୁଃ ॥ ୧୬ ॥

---

ଯେବେ ସେହି ଗୋରୁର ସମୁଦାୟ ଅଙ୍ଗ ସମ୍ପୂର୍ଣ୍ଣ ପୂର୍ବବତ୍ ନ ହୁଏ, ଯେବେ ଅଙ୍ଗର କୌଣସି ଅଂଶ ନ୍ୟୂନ ହୁଏ, ତାହା ହେଲେ ଗୋହତ୍ୟା ଜନିତ ପାପର ନିରୂପିତ ପ୍ରାୟଶ୍ଚିତ୍ତର ଅର୍ଦ୍ଧପ୍ରାୟଶ୍ଚିତ୍ତ କରିବାକୁ ହେବ । ୧୨ ।

ଯେବେ କୌଣସି ଉଦ୍ଧତବ୍ୟକ୍ତି, କାଷ୍ଠଦ୍ୱାରା ଲୋଷ୍ଟ୍ରଦ୍ୱାରା ପାଷାଣଦ୍ୱାରା ବା ଶସ୍ତ୍ରଦ୍ୱାରା ବଳପୂର୍ବକ ଗୋହତ୍ୟା କରେ, ତାହା ହେଲେ ସେ କିରୂପେ ଶୁଦ୍ଧିଲାଭ କରିବ, ବୋଲୁଅଛନ୍ତି । ୧୩ ।

କାଷ୍ଠଦ୍ୱାରା ଗୋହତ୍ୟା କଲେ ସାଁନ୍ତପନବ୍ରତ, ଲୋଷ୍ଟ୍ରଦ୍ୱାରା ଗୋହତ୍ୟା କଲେ ପ୍ରାଜାପତ୍ୟବ୍ରତ, ପାଷାଣଦ୍ୱାରା ଗୋହତ୍ୟା କଲେ ତପ୍ତକୃଚ୍ଛ୍ର ଏବଂ ଶସ୍ତ୍ରଦ୍ୱାରା ଗୋହତ୍ୟା କଲେ ଅତିକୃଚ୍ଛ୍ରବ୍ରତ ଆଚରଣ କରିବାକୁ ହେବ । ୧୪ ।

ସାନ୍ତପନବ୍ରତ କରିବାକୁ ହେଲେ ପାଞ୍ଚୋଟି ଗୋରୁ, ପ୍ରାଜାପତ୍ୟବ୍ରତ କରିବାକୁ ହେଲେ ତିନୋଟି ଗୋରୁ, ତପ୍ତକୃଚ୍ଛ୍ରବ୍ରତ କରିବାକୁ ହେଲେ ଆଠୋଟି ଗୋରୁ, ଅତିକୃଚ୍ଛ୍ରବ୍ରତ କରିବାକୁ ହେଲେ ତେରୋଟି ଗୋରୁ ଦାନ କରିବାକୁ ହେବ । ୧୫ ।

ଯେପରି ପରିମାଣରେ ଶବାଦନିମିତ୍ତ ପ୍ରାୟଶ୍ଚିତ୍ତ କରିବାକୁ ହୁଏ, ସେହିପରି ପରିମାଣରେ ଶବାଦି ଦାନ କରିବାର ବିଧେୟ, ଅଥବା ତହିଁର ଅନୁରୂପ ମୂଲ୍ୟ ଦାନ କରିବ, ଏହା ମହର୍ଷିମନୁ ମଧ୍ୟ ବୋଲିଅଛନ୍ତି । ୧୬ ।

ଅନ୍ୟତ୍ରାଙ୍କନଲକ୍ଷ୍ମଭ୍ୟାଂ ବାହନେ ଦୋହନେ ତଥା ।
ସାୟଂ ସଂଯମନାର୍ଥନ୍ତୁ ନ ଦୁଷ୍ୟେଦ୍ରୋଧବନ୍ଧୟୋଃ ॥ ୨୭ ॥
ଅତିଦାହେଽତି ବାହେ ଚ ନାସିକାଭେଦନେ ତଥା ।
ନଦୀ ପର୍ବତସଞ୍ଚାରେ ପ୍ରାୟଶ୍ଚିତ୍ତଂ ବିନିର୍ଦ୍ଦିଶେତ୍ ॥ ୨୮ ॥
ଅତିଦାହେ ଚରେତ୍ପାଦଂ ଦ୍ୱୌ ପାଦୌ ବାହନେ ଚରେତ୍ ।
ନାସିକେ ପାଦହୀନନ୍ତୁ ଚରେତ୍ ସର୍ବଂ ନିପାତନେ ॥ ୨୯ ॥
ଦହନାତ୍ତୁ ବିପଦ୍ୟେତ ଅନଡ୍ୱାନ୍ ବାପି ଯନ୍ତ୍ରିତଃ ।
ଉକ୍ତଂ ପରାଶରେଣୈବ ହ୍ୟେକପାଦଂ ଯଥାବିଧି ॥ ୩୦ ॥
ରୋଧବନ୍ଧନଯୋକ୍ତ୍ରଂ ଚ ଭାରଃ ପ୍ରହରଣନ୍ତଥା ।
ଦୁର୍ଗପ୍ରେରଣଯୋକ୍ତ୍ରଂ ଚ ନିମିତ୍ତାନି ବଧସ୍ୟ ଷଟ୍ ॥ ୩୧ ॥

---

ଗୋରୁ ଦାଗିବାପାଇଁ ଓ ଗୋରୁ ଶରୀରରେ କୌଣସି ଚିହ୍ନ ବିଶେଷ କରିବାପାଇଁ ଗୋରୁ ରୋଧ ଓ ବନ୍ଧନ କଲେ ପ୍ରାୟଶ୍ଚିତ୍ତ କରିବାକୁ ହେବ, ପରନ୍ତୁ ଭାର ବା ଶକଟାଦି ବାହନନିମିତ୍ତ, ଦୋହନନିମିତ୍ତ ଅଥବା ସାୟଂକାଳରେ ଏକତ୍ର ରକ୍ଷାକରିବାନିମିତ୍ତ ଯେବେ କେହି ଗୋରୁ ରୋଧ ବା ବନ୍ଧନ କରେ, ତାହା ହେଲେ କୌଣସି ଦୋଷ ହେବ ନାହିଁ ।୨୭।

ଯେବେ ଦାଗ ଦେବାସମୟରେ ସମଧିକ ଦଗ୍ଧକରିବାର ହୁଏ, ଯେବେ ଅଧିକ ଭାରବହନ କରାଇବାର ହୁଏ, ଯେବେ ଗୋରୁ ନାକ ଫୋଡ଼ି ଦେବାର ହୁଏ ଯେବେ ଦୁର୍ଗମ ନଦୀଉପରଦେଇ ବା ପର୍ବତଉପର ଦେଇ ଗୋରୁ ଘେନିଯିବାର ହୁଏ, ତାହା ହେଲେ ତନ୍ନିମିତ୍ତ ଗୋବଧର ପ୍ରାୟଶ୍ଚିତ୍ତ କରିବାକୁ ହେବ । ୨୮ ।

ଅତ୍ୟନ୍ତ ଦଗ୍ଧ କରିଦେଲେ ଏକପାଦ, ଅଧିକ ଭାରବହନ କରାଇଲେ ଦୁଇପାଦ, ନାକ ଫୋଡ଼ିଦେଲେ ତିନପାଦ, ଏହି ସକଳ କଲେ ସମ୍ପୂର୍ଣ୍ଣ ଚତୁଷ୍ପାଦ ପ୍ରାୟଶ୍ଚିତ୍ତ କରିବାକୁ ହେବ । ୨୯ ।

ଗୋରୁ ବନ୍ଧନାବସ୍ଥାରେ ଥାଉ ବା ବନ୍ଧନ ମୁକ୍ତ ହେଉ ଯେବେ ଦହନକାଳରେ ତାହାର ମୃତ୍ୟୁହୁଏ, ତାହା ହେଲେ ପରାଶର ବୋଲନ୍ତି ଯେ ଯଥାବିଧାନରେ ଏକପାଦ ପ୍ରାୟଶ୍ଚିତ୍ତ କରିବ । ୩୦ ।

ରୋଧ କରିବାର, ବନ୍ଧନ କରିବାର, ଯୋଚିଦେବାର ସମଧିକ ଭାର ପ୍ରଦାନ କରିବାର, ପ୍ରହାର କରିବାର, ଯୋତରେ ବନ୍ଧନପୂର୍ବକ

ବନ୍ଧପାଶ ସୁଗୁପ୍ତାଙ୍ଗୋ ମ୍ରିୟତେ ଯଦି ଗୋପଶୁଃ ।
ଭବନେ ତସ୍ୟ ନାଶସ୍ୟ ପାପେ କୃଚ୍ଛ୍ରାର୍ଦ୍ଧମର୍ହତି ॥ ୩୨ ॥
ନ ନାରିକେଳୈର୍ନଚ ଶାଣବାଳୈର୍ନଚାପି ମୌଞ୍ଜୈର୍ନଚବନ୍ଧଶୃଙ୍ଖଳୈଃ ।
ଏତୈସ୍ତୁ ଗାବୋ ନ ନିବନ୍ଧନୀୟା ବଦ୍ଧ୍ୱାତୁ ତିଷ୍ଠେତ୍ ପରଶୁଂ ଗୃହୀତ୍ୱା ।୩୩।
କୁଶୈଃ କାଶୈଶ୍ଚ ବଧ୍ନୀୟାଦ୍ଗୋପଶୁଂ ଦକ୍ଷିଣାମୁଖଂ ।
ପାଶଲଗ୍ନାଗ୍ନି ଦଗ୍ଧେଷୁ ପ୍ରାୟଶ୍ଚିତ୍ତଂ ନ ବିଦ୍ୟତେ ॥ ୩୪ ॥
ଯଦି ତତ୍ର ଭବେତ୍କାଣ୍ଡଂ ପ୍ରାୟଶ୍ଚିତ୍ତଂ କଥଂ ଭବେତ୍ ।
ଜପିତ୍ୱା ପାବନୀଂ ଦେବୀଂ ମୁଚ୍ୟତେ ତତ୍ର କିଲ୍ବିଷାତ୍ ॥ ୩୫ ॥
ପ୍ରେରୟନ୍ କୂପବାପୀଷୁ ବୃକ୍ଷଚ୍ଛେଦେଷୁ ପାତୟନ୍ ।
ଗବାଶନେଷୁ ବିକ୍ରୀଣଂ ସ୍ତତଃ ପ୍ରାପ୍ନୋତି ଗୋବଧଂ ॥ ୩୬ ॥

---

ନଦୀ ପର୍ବତପ୍ରଭୃତି ଦୁର୍ଗମ ସ୍ଥାନରେ ପ୍ରେରଣ କରିବାର, ଏହି ଛଅପ୍ରକାର ବଧ କାରଣ ହୋଇଅଛି । ୩୧ ।

ଯେବେ କୌଣସି ଗୋରୁ ରଜ୍ଜୁ ବନ୍ଧାଇଁ ପ୍ରାଣତ୍ୟାଗ କରେ, ତାହା ହେଲେ ଗୃହକର୍ତ୍ତା ଅର୍ଦ୍ଧକୃଚ୍ଛ୍ର ବ୍ରତାନୁଷ୍ଠାନ କରିବ । ୩୨ ।

ନାରିକେଳ ଦଉଡ଼ି ଶଣଦଉଡ଼ି ମୁଞ୍ଜମୟ ଦଉଡ଼ି ଅଥବା ଲୌହାଦି ଶୃଙ୍ଖଳଦ୍ୱାରା ବୃଷ ବା ଗାଭିକୁ କେତେବେଳେ ବନ୍ଧନ କରିବାର କର୍ତ୍ତବ୍ୟ ନୁହେ, ଯେବେ କେହି ବନ୍ଧନ କରେ, ତାହା ହେଲେ ପରଶୁ ହସ୍ତରେ ତେନ ପାର୍ଶ୍ୱରେ ଦଣ୍ଡାୟମାନ ଥିବ । ୩୩ ।

ଗୋପଶୁକୁ ଦକ୍ଷିଣମୁଖକରି କୁଶଦ୍ୱାରା ବା କାଶଦ୍ୱାରା ବନ୍ଧନ କରିବ। ଯେବେ ସେହି ରଜ୍ଜୁରେ ଅଗ୍ନିଲାଗି ଗୋରୁ ଦଗ୍ଧହୁଏ, ତାହା ହେଲେ ପ୍ରାୟଶ୍ଚିତ୍ତ କରିବାକୁ ହୁଏ ନାହିଁ । ୩୪ ।

ଯେବେ ସେହି ସ୍ଥଳରେ ତୃଣରାଶି ଥାଏ, ଓ ସେହି ରଜ୍ଜୁ ସଂଲଗ୍ନ ଅଗ୍ନି ତୃଣରେ ଲାଗି ଗୋରୁ ଦଗ୍ଧ ହୁଏ, ତାହା ହେଲେ ପବିତ୍ରା କାରଣ ଗାୟତ୍ରୀ ଜପ କରି ପାପରୁ ମୁକ୍ତ ହେବ । ୩୫ ।

ଯେବେ କେହି କୂପମଧ୍ୟରେ ବା ତଡ଼ାଗମଧ୍ୟରେ ଗୋରୁ ପ୍ରେରଣ କରେ, ଯେବେ କେହି ବୃକ୍ଷ ଛେଦନ କରି ଗୋରୁ ଉପରେ ପକାଇ ଦିଏ, ଯେବେ କେହି ଗୋଖାଦକ ନିକଟରେ ଗୋରୁ ବିକ୍ରୟ କରେ, ତାହା ହେଲେ ସେ ସମ୍ପୂର୍ଣ୍ଣ ଗୋହତ୍ୟା ପାତକରେ ପାତକୀ ହେବ । ୩୬ ।

ଅସ୍ଥିଭଗ୍ନୁ ଯଃ କଶ୍ଚିତ୍ ନିବନ୍ଧୋ ଯଦା ଭବେତ୍ ।
ଶ୍ରବଣଂ ହୃଦୟଂ ଭଗ୍ନଂ ମଗ୍ନୋ ବା କୂପସଙ୍କଟେ ॥ ୩୭ ।
କୂପାଦୁତ୍କ୍ରମଣେ ଚୈବ ଭଗ୍ନୋ ବା ଗ୍ରୀବପାଦୟୋଃ ।
ସ ଏବ ମ୍ରିୟତେ ତତ୍ର ତ୍ରୀନ୍ ପାଦାଂସ୍ତୁ ସମାଚରେତ୍ ॥ ୩୮ ॥
କୂପଖାତେ ତଟୀବନ୍ଧେ ନଦୀବନ୍ଧେ ପ୍ରପାସୁ ଚ ।
ପାନୀୟେଷୁ ବିପନ୍ନାନାଂ ପ୍ରାୟଶ୍ଚିତ୍ତଂ ନ ବିଦ୍ୟତେ ॥ ୩୯ ॥
କୂପଖାତେ ତଟୀଖାତେ ଦୀର୍ଘଖାତେ ତଥୈବ ଚ ।
ଅନ୍ୟେଷୁ ଧର୍ମ୍ମଖାତେଷୁ ପ୍ରାୟଶ୍ଚିତ୍ତଂ ନ ବିଦ୍ୟତେ ॥ ୪୦ ।
ବେଶ୍ମଦ୍ୱାରେ ନିବାସେଷୁ ଯୋ ନରଃ ଖାତମିଚ୍ଛତି ।
ସ୍ୱକାର୍ଯ୍ୟଗୃହଖାତେଷୁ ପ୍ରାୟଶ୍ଚିତ୍ତଂ ବିନିର୍ଦ୍ଦିଶେତ୍ ॥ ୪୧ ॥

---

ସମ୍ପୂର୍ଣ୍ଣ ଉଦ୍ଧାର ଚେଷ୍ଟା କଲେ ମଧ୍ୟ ଉକ୍ତ ସକଳ କାରଣରେ ଯେବେ କୌଣସି ଗୋରୁର କକ୍ଷଦେଶ କର୍ଣ୍ଣସ୍ଥାନ ବା ହୃଦୟ ଭଗ୍ନ ହୁଏ, କିମ୍ବା ସେହି ଗୋରୁ ଯେବେ ଦୁର୍ବିପାକବଶତଃ କୂପସଙ୍କଟରେ ପତିତ ହୁଏ । ୩୭ ।

ଅଥବା ଯେବେ କୂପର ଜଳାବତରଣ ପଥରେ ଉଠିବା ସମୟରେ ଗୋରୁର ଗ୍ରୀବା ବା ପଦ ଭଗ୍ନ ହୁଏ, ଏବଂ ସେହି କାରଣରେ ଯେବେ ସେହି ସମୟରେ ବା ପରେ ଗୋରୁର ମୃତ୍ୟୁ ହୁଏ, ତାହା ହେଲେ ଗୋବଧର ତ୍ରିପାଦ ପ୍ରାୟଶ୍ଚିତ୍ତ କରିବାକୁ ହେବ । ୩୮ ।

କୂପସନ୍ନିହିତ ଜଳପାନାର୍ଥ ଖାତରେ, ସରୋବରାଦି ବନ୍ଧାଇବା ଘାଟରେ, ନଦୀବନ୍ଧାଇବା ପ୍ରଦେଶରେ, ପ୍ରପା ଅର୍ଥାତ୍ ଅଳ୍ପ ଜଳାଶୟରେ, ଅଥବା ଜଳପାନାର୍ଥ କୁଣ୍ଡରେ ଗୋରୁର ମୃତ୍ୟୁ ହେଲେ ପ୍ରାୟଶ୍ଚିତ୍ତ ନାହିଁ ।୩୯।

କୂପସନ୍ନିହିତ ଖାତରେ, ନଦୀ ବା ଜଳାଶୟର ତଟସନ୍ନିହିତ ଖାତ-ରେ, କୌଣସି ଦୀର୍ଘଖାତରେ ଅଥବା ସାଧାରଣ ଜଳପାନାର୍ଥ ଖାତମାନଙ୍କରେ ଗୋରୁର ମୃତ୍ୟୁ ହେଲେ ପ୍ରାୟଶ୍ଚିତ୍ତ ନାହିଁ । ୪୦ ।

ଯେବେ କେହି ଦ୍ୱାରସମ୍ମୁଖରେ ବା ଗୃହମଧ୍ୟରେ ଖାତ କରେ, ଅଥବା ଯେବେ କେହି ଆତ୍ମକାର୍ଯ୍ୟନିମିତ୍ତ ବା ଗୃହ ପ୍ରସ୍ତୁତ କରିବା ନିମିତ୍ତ ଖାତ କରେ ଏବଂ ତହିଁରେ ଯେବେ ବୃଷ ବା ଗାଭୀର ମୃତ୍ୟୁ ହୁଏ, ତାହା ହେଲେ ସମ୍ପୂର୍ଣ୍ଣ ପ୍ରାୟଶ୍ଚିତ୍ତ କରିବାକୁ ହେବ । ୪୧ ।

ନଶି ବନ୍ଧନରୁଦ୍ଧେଷୁ ସର୍ପବ୍ୟାଘ୍ରହତେଷୁ ଚ ।
ଅଗ୍ନିବିଦ୍ୟୁଦ୍‌ବିପନ୍ନାନାଂ ପ୍ରାୟଶ୍ଚିତ୍ତଂ ନ ବିଦ୍ୟତେ । ୪୨ ।
ଗ୍ରାମଘାତେ ଶରୌଘେଣ ବେଶ୍ମଭଙ୍ଗନିପାତନେ ।
ଅତିବୃଷ୍ଟିହତାନାଂ ଚ ଯେ ଦଗ୍ଧା ବେଶ୍ମକେଷୁ ଚ । ୪୩ ।
ସଂଗ୍ରାମେ ପ୍ରହତାନାଂ ଚ ଯେ ଦଗ୍ଧା ବେଶ୍ମକେଷୁ ଚ ।
ଦାବାଗ୍ନିଗ୍ରାମଘାତେ ବା ପ୍ରାୟଶ୍ଚିତ୍ତଂ ନ ବିଦ୍ୟତେ । ୪୪ ।
ଯନ୍ତ୍ରିତା ଗୌଶ୍ଚିକିତ୍ସାର୍ଥଂ ମୂଢ଼ଗର୍ଭବିମୋଚନେ ।
ଯତ୍ନେ କୃତେ ବିପଦ୍ୟେତ ପ୍ରାୟଶ୍ଚିତ୍ତଂ ନ ବିଦ୍ୟତେ । ୪୫ ।
ବ୍ୟାପନ୍ନାନାଂ ବହୂନାଂ ଚ ବନ୍ଧନେ ରୋଧନେଽପି ବା ।
ଭିଷଙ୍ମିଥ୍ୟା ପ୍ରଚାରେ ଚ ପ୍ରାୟଶ୍ଚିତ୍ତଂ ବିନିର୍ଦ୍ଦିଶେତ୍ । ୪୬ ।

---

ରାତ୍ରିକାଳରେ ଗୋରୁକୁ ରୋଧ ବା ବନ୍ଧନ କରି ରଖିଲେ ଯେବେ ସେହି ଗୋରୁ ଅଗ୍ନିଦ୍ୱାରା ବିଦ୍ୟୁଦ୍ଦ୍ୱାରା ବ୍ୟାଘ୍ରଦ୍ୱାରା ବା ସର୍ପଦଂଶନଦ୍ୱାରା ପ୍ରାଣତ୍ୟାଗ କରେ, ତାହା ହେଲେ ପ୍ରାୟଶ୍ଚିତ୍ତ କରିବାକୁ ହୁଏ ନାହିଁ ।୪୨।

ଯେବେ ଶରନିକରଦ୍ୱାରା ଗ୍ରାମ ପ୍ରପୀଡ଼ିତ ହୁଏ, ଯେବେ ଘର ପଡ଼ିଯାଏ, ଯେବେ ଅତିବୃଷ୍ଟି ହୁଏ, ତାହା ହେଲେ ଏଣି କାରଣରେ ଗୋରୁର ମୃତ୍ୟୁ ହେଲେ ପ୍ରାୟଶ୍ଚିତ୍ତ କରିବାକୁ ହୁଏ ନାହିଁ । ୪୩ ।

ଯେସକଳ ଗୋରୁ ସଂଗ୍ରାମରେ ନିହତ ହୁଅନ୍ତି, ଯେସମସ୍ତ ଗୋରୁ ଗୃହଦାହରେ ଦଗ୍ଧ ହୋଇ ମରନ୍ତି, ଯେସମସ୍ତ ଗୋରୁ ଗ୍ରାମରୋଧଦ୍ୱାରା ବା ଦାବାନଳଦ୍ୱାରା ପ୍ରାଣ ପରିତ୍ୟାଗ କରନ୍ତି ସେମାନଙ୍କ ନିମିତ୍ତ ପ୍ରାୟଶ୍ଚିତ୍ତ କରିବାକୁ ହୁଏ ନାହିଁ । ୪୪ ।

ଯେବେ ଚିକିତ୍ସାର୍ଥ ଗୋରୁକୁ ରୋଧ ବା ବନ୍ଧନ କରାଯାଏ, ଯେବେ ଦୂଷିତଗର୍ଭ ମୋଚନ କରାଇବାକୁ ହୁଏ ତାଦୃଶ ସ୍ଥଳରେ ଯତ୍ନ କଲେ ମଧ୍ୟ ଗୋରୁର ମୃତ୍ୟୁ ହୁଏ, ତାହା ହେଲେ ପ୍ରାୟଶ୍ଚିତ୍ତ ନାହିଁ । ୪୫ ।

ବହୁସଂଖ୍ୟକ ଗାଭୀ ବା ବୃଷ ଏକସ୍ଥାନରେ ରୁଧ ବା ବଦ୍ଧ କରି ରଖିଲେ ଅଥବା ଗୋଚିକିତ୍ସାନଭିଜ୍ଞ ବ୍ୟକ୍ତିଦ୍ୱାରା ଚିକିତ୍ସା କରାଇଲେ ଯେବେ ସେହି ଗୋରୁ ପଞ୍ଚତ୍ୱ ପ୍ରାପ୍ତ ହୁଏ, ତାହା ହେଲେ ସମ୍ପୂର୍ଣ୍ଣ ଗୋବଧର ପ୍ରାୟଶ୍ଚିତ୍ତ କରିବାକୁ ହେବ । ୪୬ ।

ଗୋବୃଷାଣାଂ ବିପତ୍ତୌ ଚ ଯାବନ୍ତଃ ପ୍ରେକ୍ଷକା ଜନାଃ
ନ ବାରୟନ୍ତି ତାଂ ତେଷାଂ ସର୍ବେଷାଂ ପାତକଂ ଭବେତ୍ । ୪୭ ।
ଏକୋ ହତୋ ଯୈର୍ବହୁଭିଃ ସମେତୈର୍ନ
ଜ୍ଞାୟତେ ଯସ୍ୟ ହତୋ ଽଭିଘାତାତ୍ ।
ହତେ୍ୟନ ତେଷାମୁପଲଭ୍ୟ ହନ୍ତା
ନିବର୍ତ୍ତନୀୟୋ ନୃପସନ୍ନିଯୁକ୍ତୈଃ । ୪୮ ।
ଏକା ଚେଦ୍ବହୁଭିଃ କାପି ଦୈବାଦ୍ ବ୍ୟାପାଦିତା ଭବେତ୍ ।
ପାଦଂ ପାଦଂ ଚ ହତ୍ୟାୟାଶ୍ଚରେୟୁସ୍ତେ ପୃଥକ୍ ପୃଥକ୍ । ୪୯ ।
ହତେଷୁ ରୁଧିରଂ ଦୃଶ୍ୟଂ ବ୍ୟାଧିଗ୍ରସ୍ତଃ କୃଶୋ ଭବେତ୍ ।
ନାନା ଭବତି ଦୃଷ୍ଟେଷୁ ଏବମନ୍ୱେଷଣଂ ଭବେତ୍ । ୫୦ ।

---

ଯେଉଁସମୟରେ ବୃଷ ବା ଗାଈର ଅପଘାତ ମୃତ୍ୟୁ ହୁଏ ସେ ସମୟରେ ଯେତେ ଗୁଡ଼ିଏ ମନୁଷ୍ୟ ତାହା ଦେଖିବା ଶୁଣି ସାଧ୍ୟାନୁସାରେ ପ୍ରତୀକାର ଚେଷ୍ଟା ନ କରନ୍ତି, ସେମାନେ ସମସ୍ତେ ଗୋହତ୍ୟାପାତକରେ ପାତକୀ ହୁଅନ୍ତି । ୪୭ ।

ଯେବେ ବହୁଲୋକ ଏକତ୍ର ହୋଇ କୌଣସି ଏକ ଗାଈ ବା ବୃଷର ଅଧିଷ୍ଠିତ ସ୍ଥାନରେ ଲୋଷ୍ଟ୍ର, ନିକ୍ଷେପ ବା ଯଷ୍ଟିପ୍ରହାର ଆଘାତ କରନ୍ତି, ତହିଁରେ ଯେ ଗୋହତ୍ୟା ହୁଏ, ତାହା ହେଲେ ରାଜା କର୍ମଚାରୀଦ୍ୱାରା ସେମାନଙ୍କର ପ୍ରତ୍ୟେକଙ୍କୁ ହତ୍ୟା କରାଇଁ ଗୋହତ୍ୟାକାରୀ ନିରୂପଣ କରିବେ । ୪୮ ।

ଯେବେ ଏପ୍ରକାର ହୁଏ ଯେ ବହୁବ୍ୟକ୍ତିଦ୍ୱାରା ଗୋଟିଏ ଗୋରୁ ହତ୍ୟା ହୋଇଅଛି ସେହି ଗୋହତ୍ୟାକାରୀମାନଙ୍କ ମଧ୍ୟରେ ପ୍ରତ୍ୟେକ ସମ୍ପୂର୍ଣ୍ଣ ଗୋବଧର ଚତୁର୍ଥାଂଶ ପ୍ରାୟଶ୍ଚିତ୍ତ କରିବେ । ୪୯ ।

ଗୋହତ୍ୟା ହେଲେ ତାହା ରକ୍ତ ପରୀକ୍ଷା କରିବାକୁ ହେବ ଏବଂ ଏହା ନିର୍ଣ୍ଣୟ କରିବ ଯେ, ସେହି ଗୋରୁ ବ୍ୟାଧିଗ୍ରସ୍ତ ବା କୃଶ ଥିଲା କି ନା କାରଣ ଦୋଷବିଶେଷରେ ନାନାପ୍ରକାର ପୃଥକ୍ ପ୍ରାୟଶ୍ଚିତ୍ତର ବିଧି ଅଛି, ଅତଏବ ଏତତ୍ସମୁଦାୟ ସବିଶେଷ ଅନୁସନ୍ଧାନ କରିବାର ନିତାନ୍ତ ଆବଶ୍ୟକ । ୫୦ ।

ମନୁନା ଚୈବମେବୈକେନ ସର୍ବଶାସ୍ତ୍ରାଣି ଜାନତା ।
ପ୍ରାୟଶ୍ଚିତ୍ତଂ ତୁ ତେନୋକ୍ତଂ ଗୋଘ୍ନ ଚାନ୍ଦ୍ରାୟଣଂ ଚରେତ୍ ॥ ୫୧ ॥
କେଶାନାଂ ରକ୍ଷଣାର୍ଥାୟ ଦ୍ୱିଗୁଣଂ ଗୋବ୍ରତଂ ଚରେତ୍ ।
ଦ୍ୱିଗୁଣେ ବ୍ରତ ଆଦିଷ୍ଟେ ଦକ୍ଷିଣା ଦ୍ୱିଗୁଣା ଭବେତ୍ ॥ ୫୨ ॥
ରାଜା ବା ରାଜପୁତ୍ରୋ ବା ବ୍ରାହ୍ମଣୋ ବା ବହୁଶ୍ରୁତଃ ।
ଅକୃତ୍ୱା ବପନଂ ତସ୍ୟ ପ୍ରାୟଶ୍ଚିତ୍ତଂ ବିନିର୍ଦ୍ଦିଶେତ୍ ॥ ୫୩ ॥
ଯସ୍ୟ ନ ଦ୍ୱିଗୁଣଂ ଦାନଂ କେଶଶ୍ଚ ପରିରକ୍ଷିତଃ ।
ତତ୍ପାପଂ ତସ୍ୟ ତିଷ୍ଠେତ ବକ୍ତା ଚ ନରକଂ ବ୍ରଜେତ୍ ॥ ୫୪ ॥
ଯତ୍ କିଞ୍ଚିତ୍ କ୍ରିୟତେ ପାପଂ ସର୍ବଂ କେଶେଷୁ ତିଷ୍ଠତି ।
ସର୍ବାନ୍ କେଶାନ୍ ସମୁଦ୍ଧୃତ୍ୟ ଛେଦୟେଦଙ୍ଗୁଳିଦ୍ୱୟଂ ॥ ୫୫ ॥
ଏବଂ ନାରୀକୁମାରୀଣାଂ ଶିରସୋ ମୁଣ୍ଡନଂ ସ୍ମୃତଂ ।

---

ଏକମାତ୍ର ସର୍ବଶାସ୍ତ୍ରଜ୍ଞ ମନୁ ବୋଲିଅଛନ୍ତି ଯେ ଗୋହତ୍ୟା ମାତ୍ରକେ ଚାନ୍ଦ୍ରାୟଣବ୍ରତ ଅନୁଷ୍ଠାନ କରିବ । ୫୧ ।

ଗୋହତ୍ୟାପ୍ରାୟଶ୍ଚିତ୍ତ କରିବା ସମୟରେ ଯେ କେଶ ରକ୍ଷା କରିବାକୁ ଇଚ୍ଛା କରିବ, ତାହାକୁ ଦ୍ୱିଗୁଣ ପ୍ରାୟଶ୍ଚିତ୍ତ କରିବାକୁ ହେବ, ଯେସ୍ଥଳରେ ଦ୍ୱିଗୁଣ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଦେବ, ସେସ୍ଥଳରେ ଦକ୍ଷିଣା ମଧ୍ୟ ଦ୍ୱିଗୁଣ ପ୍ରଦାନ କରିବାକୁ ହେବ । ୫୨ ।

ରାଜା, ରାଜପୁତ୍ର ବା ଜ୍ଞାନସମ୍ପନ୍ନ ବ୍ରାହ୍ମଣଙ୍କୁ କେଶ ମୁଣ୍ଡନ ନ କରି ପ୍ରାୟଶ୍ଚିତ୍ତ କରିବାକୁ ବ୍ୟବସ୍ଥା ଦେବେ । ୫୩ ।

ଯେବ୍ୟକ୍ତି ଦ୍ୱିଗୁଣ ପ୍ରାୟଶ୍ଚିତ୍ତ ଓ ଦ୍ୱିଗୁଣ ଦକ୍ଷିଣା ପ୍ରଦାନ ନ କରି କେଶ ରକ୍ଷା କରିବ, ସେବ୍ୟକ୍ତିର ପାପ ପୂର୍ବବତ୍ ଅକ୍ଷତ ଥିବ, ଏବଂ ଯେବ୍ୟକ୍ତି ତାଦୃଶ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ପ୍ରଦାନ କରିବ, ସେ ନରକଗାମୀ ହେବ । ୫୪ ।

ଯାହା କିଛି ପାପ କରିବାର ହୁଏ, ତତ୍ସମୁଦାୟ କେଶ ସକଳରେ ଅବସ୍ଥାନ କରେ । ଅତଏବ ସମୁଦାୟ କେଶ ଧରି ଅଗ୍ରଭାଗ ଦୁଇଅଙ୍ଗୁଳି ମାତ୍ର ଛେଦନ କରିବ । ( ଇଦୃଶ ବ୍ୟବସ୍ଥା ସକଳ-ପ୍ରତି ଦେୟ ହେବ ନାହିଁ ) । ୫୫ ।

ଯେଉଁମାନେ କୁମାରୀ ବା ପତିବ୍ରତୀ ନାରୀ, ସେମାନଙ୍କର ମୁଣ୍ଡନ ସ୍ଥଳରେ ଏହିପରି ବ୍ୟବସ୍ଥା ଦେବ । ଏହି ସମସ୍ତ ରମଣୀଙ୍କର ସ୍ପର୍ଶ •

ନ ସ୍ତ୍ରିୟାଃ କେଶବପନଂ ନ ଦୂରେ ଶୟନାଶନଂ ॥ ୫୬ ।
ନଚ ଗୋଷ୍ଠେ ବସେଦ୍ରାତ୍ରୌ ନ ଦିବା ଗା ଅନୁ ବ୍ରଜେତ୍ ।
ନଦୀଷୁ ସଙ୍ଗମେ ଚୈବ ଅରଣ୍ୟେଷୁ ବିଶେଷତଃ ॥ ୫୭ ॥
ନ ସ୍ତ୍ରୀଣାମଜିନଂ ବାସୋ ବ୍ରତମେବଂ ସମାଚରେତ୍ ।
ତ୍ରିସନ୍ଧ୍ୟଂ ସ୍ନାନମିତ୍ୟୁକ୍ତଂ ସୁରାଣାମର୍ଚ୍ଚନଂ ତଥା ॥ ୫୮ ॥
ବନ୍ଧୁମଧ୍ୟେ ବ୍ରତଂ ତାସାଂ କୃଚ୍ଛ୍ରଚାନ୍ଦ୍ରାୟଣାଦିକଂ ।
ଗୃହେଷୁ ନିୟତଂ ତଷ୍ଠେଚ୍ଛୁଚିର୍ନିୟମମାଚରେତ୍ ॥ ୫୯ ॥
ଇହ ଯୋ ଗୋବଧଂ କୃତ୍ୱା ପ୍ରଚ୍ଛାଦୟିତୁମିଚ୍ଛତି ।
ସ ଯାତି ନରକଂ ଘୋରଂ କାଳସୂତ୍ରମସଂଶୟଂ ॥ ୬୦ ॥
ବିମୁକ୍ତୋ ନରକାତ୍ତସ୍ମାନ୍ମର୍ତ୍ତ୍ୟଲୋକେ ପ୍ରଜାୟତେ ।
କ୍ଳୀବୋ ଦୁଃଖୀ ଚ କୁଷ୍ଠୀ ଚ ସପ୍ତଜନ୍ମନି ବୈ ନରଃ ॥ ୬୧ ॥

---

ମୁଣ୍ଡନ ଆଉ ଦୂରରେ ସ୍ୱତନ୍ତ୍ର ଶୟନ ବା ସ୍ୱତନ୍ତ୍ର ଭୋଜନର ବିଧାନ ହୁଏ ନାହିଁ । ୫୬ ।

ରମଣୀମାନେ ରାତ୍ରିରେ ଗୋଷ୍ଠରେ ଶୟନ କରିବେ ନାହିଁ, ଦିବସରେ ଗାଭି ବା ବୃଷର ଅନୁଗାମିନୀ ହେବେ ନାହିଁ । ବିଶେଷତଃ ନଦୀରେ, ଜଳସମାଗମ ସ୍ଥଳରେ ବା ଅରଣ୍ୟମଧ୍ୟରେ ଗମନ କରିବାର ସେମାନଙ୍କର ଅବିଧେୟ । ୫୭ ।

ସ୍ତ୍ରୀଲୋକମାନେ ଅଜିନ ପରିଧାନ କରିବେ ନାହିଁ । ସେମାନେ ତ୍ରିସନ୍ଧ୍ୟା ସ୍ନାନ ଓ ଦେବାର୍ଚ୍ଚନା କରି ବ୍ରତ ଅନୁଷ୍ଠାନ କରିବେ । ୫୮ ।

ସ୍ତ୍ରୀଲୋକଙ୍କର କୃଚ୍ଛ୍ର ଚାନ୍ଦ୍ରାୟଣ ପ୍ରଭୃତି ବ୍ରତ ସମୁଦାୟ ବନ୍ଧୁ ମଧ୍ୟରେ ସମ୍ପନ୍ନ କରିବାକୁ ହେବ । ସେମାନେ ନିୟତ ଗୃହରେ ଅବସ୍ଥାନ ପୂର୍ବକ ଶୁଚି ହୋଇ ନିୟମ ପାଳନ କରିବେ । ୫୯ ।

ଇହଲୋକରେ ଯେ ବ୍ୟକ୍ତି ଗୋବଧ କରି ଗୋପନ କରିବାକୁ ଇଚ୍ଛା କରେ, ସେ କାଳସୂତ୍ର ନାମକ ଘୋରନରକକୁ ଗମନ କରେ ସନ୍ଦେହ ନାହିଁ । ୬୦ ।

ସେହି ବ୍ୟକ୍ତି ପରେ ସେହି ନରକରୁ ମୁକ୍ତ ହୋଇ ମର୍ତ୍ତ୍ୟଲୋକରେ, ମନୁଷ୍ୟ ଯୋନିରେ ଜନ୍ମ ପରିଗ୍ରହ କରି ସପ୍ତଜନ୍ମ ପର୍ଯ୍ୟନ୍ତ କ୍ଳୀବ ଦୁଃଖୀ ଓ କୁଷ୍ଠରୋଗାକ୍ରାନ୍ତ ହୁଏ । ୬୧ ।

ତସ୍ମାତ୍ ପ୍ରକାଶୟେତ୍ ପାପଂ ସ୍ୱଧର୍ମଂ ସତତଂ ଚରେତ୍ ।
ସ୍ତ୍ରୀବାଲଭୃତ୍ୟଗୋବିପ୍ରେଷ୍ୱତିକୋପଂ ବିବର୍ଜ୍ଜୟେତ୍ ॥ ୭୨ ॥
ଇତି ପାରାଶରେ ଧର୍ମ୍ମଶାସ୍ତ୍ରେ ନବମୋଽଧ୍ୟାୟଃ ।

ଦଶମ ଅଧ୍ୟାୟ ।

ଚାତୁର୍ବର୍ଣ୍ଣ୍ୟସ୍ୟ ସର୍ବ୍ବସ୍ୱ ହ୍ୟୟଂ ପ୍ରୋକ୍ତା ତୁ ନିଷ୍କୃତିଃ ।
ଅଗମ୍ୟା ଗମନେ ଚୈବ ଶୁଦ୍ଧୌ ଚାନ୍ଦ୍ରାୟଣଞ୍ଚରେତ୍ ॥ ୧ ॥
ଏକୈକଂ ହ୍ରାସୟେତ୍ ପିଣ୍ଡଂ କୃଷ୍ଣେ ଶୁକ୍ଳେ ଚ ବର୍ଦ୍ଧୟେତ୍ ।
ଅମାବାସ୍ୟାଂ ନ ଭୁଞ୍ଜୀତ ଏଷ ଚାନ୍ଦ୍ରାୟଣୋ ବିଧିଃ ॥ ୨ ॥
କୁକ୍କୁଟାଣ୍ଡପ୍ରମାଣଂ ତୁ ଗ୍ରାସଞ୍ଚ ପରିକଳ୍ପୟେତ୍ ।
ଅନ୍ୟଥା ଭାବଦୁଷ୍ଟସ୍ୟ ନ ଧର୍ମ୍ମୋ ନୈବ ଶୁଦ୍ଧ୍ୟତି ॥ ୩ ॥
ପ୍ରାୟଶ୍ଚିତ୍ତେ ତତଶ୍ଚୀର୍ଣ୍ଣେ କୁର୍ଯ୍ୟାଦ୍ବ୍ରାହ୍ମଣଭୋଜନଂ ।
ଗୋଦ୍ୱୟଂ ବସ୍ତ୍ର ଯୁଗ୍ମଞ୍ଚ ଦଦ୍ୟାଦ୍ବିପ୍ରେଷୁ ଦକ୍ଷିଣାଂ ॥ ୪ ॥

---

ଅତଏବ ପାପ କର ପ୍ରକାଶ କରିବ, ଗୋପନ କରିବ ନାହିଁ । ସର୍ବ୍ବଦା ନିଜଧର୍ମ୍ମର ଅନୁଷ୍ଠାନ କରିବ । ସ୍ତ୍ରୀଜାତି ପ୍ରତି, ବାଳକ ପ୍ରତି, ଭୃତ୍ୟ ପ୍ରତି ଗୋଜାତି ପ୍ରତି ଓ ବ୍ରାହ୍ମଣଙ୍କ ପ୍ରତି ସାତିଶୟ କୋପ କରିବ ନାହିଁ । ୭୨ ।

ପରାଶର ସଂହିତା ଦଶମ ଅଧ୍ୟାୟ ।

ବ୍ରାହ୍ମଣ କ୍ଷତ୍ରିୟ ପ୍ରଭୃତି ଚତୁର୍ବ୍ବର୍ଣ୍ଣର ପ୍ରାୟଶ୍ଚିତ୍ତ ବିଧାନ କହିଲୁଁ, ଅଗମ୍ୟାଗମନ କଲେ ତତ୍‌ପାପ କ୍ଷୟ ନିମିତ୍ତ ଚାନ୍ଦ୍ରାୟଣ କଲେ ଶୁଦ୍ଧି ଲାଭ କରିପାରିବ । ୧ ।

କୃଷ୍ଣପକ୍ଷରେ ପ୍ରତିଦିନ ଏକ୍ ଗ୍ରାସ ହ୍ରାସ କରିବ ଏବଂ ଶୁକ୍ଳପକ୍ଷରେ ପ୍ରତିଦିନ ଏକ୍ ଗ୍ରାସ ବୃଦ୍ଧି କରିବାକୁ ହେବ । ଅମାବାସ୍ୟାଦିବସ ଭୋଜନ କରିବ ନାହିଁ । ଏହି ବିଧାନାନୁସାରେ ଚାନ୍ଦ୍ରାୟଣ ବ୍ରତ ଅନୁଷ୍ଠାନକରିବ ।୨।

ଏକ୍ ଗ୍ରାସର ପରିମାଣ କୁକ୍କୁଟାଣ୍ଡସଦୃଶ ହେବ । ଯେବେ କେହି ଏହାର ଅନ୍ୟଥାଚରଣ କରେ, ତାହା ହେଲେ ଧର୍ମ୍ମଶାସ୍ତ୍ର ଅଭିପ୍ରାୟ ବିରୁଦ୍ଧ ହେବାରୁ ଧର୍ମ୍ମ ବା ଶୁଦ୍ଧି ଲାଭ କଦାପି ହେବ ନାହିଁ । ୩ ।

ପ୍ରାୟଶ୍ଚିତ୍ତ ଅନୁଷ୍ଠିତ ହେଲେ ବ୍ରାହ୍ମଣ ଭୋଜନ କରାଇବ, ପ୍ରତ୍ୟେକ ବ୍ରାହ୍ମଣଙ୍କୁ ଦୁଇଗୋଟି ଗାଈ ଓ ଏକଯୋଡ଼ା ବସ୍ତ୍ର ଦକ୍ଷିଣା ପ୍ରଦାନ କରିବ ।୪।

ଚଣ୍ଡାଲୀଞ୍ଚ ଶ୍ୱପାକୀଞ୍ଚ ହ୍ୟଭିଗଚ୍ଛତି ଯୋ ଦ୍ୱିଜଃ ।
ତ୍ରିରାତ୍ରମୁପବାସୀ ସ୍ୟାଦ୍ୱିପ୍ରାଣାମନୁଶାସନାତ୍ ॥ ୫ ॥
ସଶିଖଂ ବପନଂ କୁର୍ଯ୍ୟାତ୍ ପ୍ରାଜାପତ୍ୟଦ୍ୱୟଂ ଚରେତ୍ ।
ବ୍ରହ୍ମକୂର୍ଚ୍ଚଂ ତତଃ କୃତ୍ୱା କୁର୍ଯ୍ୟାଦ୍ବ୍ରାହ୍ମଣତର୍ପଣଂ ॥ ୬ ॥
ଗାୟତ୍ରୀଞ୍ଚ ଜପେନ୍ନିତ୍ୟଂ ଦଦ୍ୟାଦ୍ଗୋମିଥୁନଦ୍ୱୟଂ ।
ବିପ୍ରାୟ ଦକ୍ଷିଣାଂ ଦଦ୍ୟାଚ୍ଛୁଦ୍ଧି ମାପ୍ନୋତ୍ୟସଂଶୟଂ ॥ ୭ ॥
କ୍ଷତ୍ରିୟସ୍ୟାପି ବୈଶ୍ୟୋ ବା ଚଣ୍ଡାଲୀଂ ଗଚ୍ଛତୋ ଯଦି ।
ପ୍ରାଜାପତ୍ୟଦ୍ୱୟଂ କୁର୍ଯ୍ୟାଦଦ୍ୟାଦ୍ଗୋମିଥୁନଦ୍ୱୟଂ ॥ ୮ ॥
ଶ୍ୱପାକୀମଥ ଚଣ୍ଡାଲୀଂ ଶୂଦ୍ରୋ ବୈ ଯଦି ଗଚ୍ଛତି ।
ପ୍ରାଜାପତ୍ୟଂ ଚରେତ୍ କୃଚ୍ଛ୍ରଂ ଦଦ୍ୟାଦ୍ଗୋମିଥୁନନ୍ତଥା ॥ ୯ ॥
ମାତରଂ ଯଦି ଗଚ୍ଛେତ ଭଗିନୀଂ ପୁତ୍ରିକାଂ ତଥା ।
ଏତାସ୍ତୁ ମୋହିତୋ ଗତ୍ୱା ତ୍ରୀନ୍ କୃଚ୍ଛ୍ରାଂସ୍ତୁ ସମାଚରେତ୍ ॥ ୧୦ ॥

---

ଯେ ବ୍ରାହ୍ମଣ ଚଣ୍ଡାଳୀ ବା ଶ୍ୱପାକୀ ଗମନ କରିବ, ସେ ବ୍ରାହ୍ମଣଙ୍କ ଆଜ୍ଞାକ୍ରମରେ ତ୍ରିରାତ୍ର ଉପବାସୀ ଥିବ । ୫ ।

ତଦନନ୍ତର ସେ ଶିଖାସମେତ ସମୁଦାୟ କେଶ ବପନକରି ଦୁଇ-ଗୋଟି ପ୍ରାଜାପତ୍ୟ ବ୍ରତ ଅନୁଷ୍ଠାନ କରିବ । ପରେ ବ୍ରହ୍ମକୂର୍ଚ୍ଚର ଅନୁଷ୍ଠାନ କରି ଭୋଜନାଦିଦ୍ୱାରା ବ୍ରାହ୍ମଣମାନଙ୍କୁ ପରିତୁଷ୍ଟ କରିବ । ୬ ।

ସେ ନିତ୍ୟ ଗାୟତ୍ରୀ ଜପକରି ବ୍ରାହ୍ମଣଙ୍କୁ ଗୋଟିଏ ବୃଷ ଓ ଗୋଟିଏ ଗାଭୀ ଦକ୍ଷିଣା ପ୍ରଦାନପୂର୍ବକ ପାପରୁ ମୁକ୍ତିଲାଭ କରିପାରିବ ସନ୍ଦେହ ନାହିଁ । ୭ ।

ଯେବେ କୌଣସି କ୍ଷତ୍ରିୟ ବା ବୈଶ୍ୟ ଚଣ୍ଡାଳୀଗମନ କରେ, ତାହା ହେଲେ ଦୁଇଗୋଟି ପ୍ରାଜାପତ୍ୟ ବ୍ରତ କରି ବ୍ରାହ୍ମଣଙ୍କୁ ଗୋଟିଏ ବୃଷ ଓ ଗୋଟିଏ ଗାଭୀ ଦକ୍ଷିଣା ପ୍ରଦାନ କରିବ । ୮ ।

ଯେବେ କୌଣସି ଶୂଦ୍ର, ଶ୍ୱପାକୀ ଅଥବା ଚଣ୍ଡାଳୀ ଗମନ କରେ ତାହା ହେଲେ କୃଚ୍ଛ୍ରପ୍ରାଜାପତ୍ୟବ୍ରତ ଅନୁଷ୍ଠାନ କରିବ ଏବଂ ଗୋଟିଏ ବୃଷ ସହିତ ଗୋଟିଏ ଗାଭୀ ଦକ୍ଷିଣା ପ୍ରଦାନ କରିବାକୁ ହେବ । ୯ ।

ଯେବେ କୌଣସିବ୍ୟକ୍ତି ମୋହବଶତଃ ମାତୃଗମନ ଭଗିନୀଗମନ ବା କନ୍ୟାଗମନ କରେ, ତାହା ହେଲେ ତିନଗୋଟି କୃଚ୍ଛ୍ରବ୍ରତ କରିବ । ୧୦ ।

ଚାନ୍ଦ୍ରାୟଣତ୍ରୟଂ କୁର୍ଯ୍ୟାଚ୍ଛିଶ୍ନଚ୍ଛେଦେନ ଶୁଧ୍ୟତି ।
ମାତୃସ୍ୱସୃଗମେ ଚୈବ ଆତ୍ମମେଢ୍ରନିକର୍ତ୍ତନଂ । ୧୧ ॥
ଅଜ୍ଞାନାତ୍ତୁ ଯୋ ଗଚ୍ଛେତ୍ କୁର୍ଯ୍ୟାଚ୍ଚାନ୍ଦ୍ରାୟଣଦ୍ୱୟଂ ।
ଦଶଗୋମିଥୁନଂ ଦଦ୍ୟାଚ୍ଛୁଦ୍ଧିଃ ପରାଶରୋଽବ୍ରବୀତ୍ । ୧୨ ॥
ପିତୃଦାରାଂ ସମାରୁହ୍ୟ ମାତୁରାପ୍ତାଞ୍ଚ ଭ୍ରାତୃଜାଂ ।
ଗୁରୁପତ୍ନୀଂ ସ୍ନୁଷାଞ୍ଚୈବ ଭ୍ରାତୃଭାର୍ଯ୍ୟାଂ ତଥୈବଚ । ୧୩ ॥
ମାତୁଳାନୀଂ ସଗୋତ୍ରାଞ୍ଚ ପ୍ରାଜାପତ୍ୟତ୍ରୟଞ୍ଚରେତ୍ ।
ଗୋଦ୍ୱୟଂ ଦକ୍ଷିଣାଂ ଦତ୍ୱା ଶୁଧ୍ୟତେ ନାତ୍ର ସଂଶୟଃ । ୧୪ ॥
ପଶୁବେଶ୍ୟାଦିଗମନେ ମହିଷ୍ୟୁଷ୍ଟ୍ରୀ କପୀସ୍ତଥା ।
ଖରୀଞ୍ଚ ଶୂକରୀଂ ଗତ୍ୱା ପ୍ରାଜାପତ୍ୟଂ ସମାଚରେତ୍ । ୧୫ ॥

---

ପରେ ତିନଗୋଟି ଚାନ୍ଦ୍ରାୟଣ ବ୍ରତ କରି ଲିଙ୍ଗ ଛେଦିଲେ ଶୁଦ୍ଧି ଲାଭ କରି ପାରିବ । ଯେ ବ୍ୟକ୍ତି ଜ୍ଞାନପୂର୍ବକ ମାତୃସ୍ୱସା ( ମାଉସୀ ) ଗମନ କରିବ, ତାହାର ଲିଙ୍ଗଛେଦ ପ୍ରାୟଶ୍ଚିତ୍ତ ହେବ । ୧୧ ।

ପରାଶରଙ୍କର ମତ ଏହି ଯେ, ଯେ ବ୍ୟକ୍ତି ଅଜ୍ଞାନବଶତଃ ମାତୃସ୍ୱସା ଗମନ କରିବ, ତାହାକୁ ଦୁଇଗୋଟି ଚାନ୍ଦ୍ରାୟଣବ୍ରତ କରିବାକୁ ହେବ, ଏବଂ ସେ ଦଶଗୋଟି ବୃଷ ଓ ଦଶଗୋଟିଗାଭୀ ପ୍ରଦାନ କଲେ ଶୁଦ୍ଧିଲାଭ କରି ପାରିବ । ୧୨ ।

ଯେ ବ୍ୟକ୍ତି ବିମାତୃ ଗମନ କରିବ, ମାତାଙ୍କ ସହୋଦରୀ ଗମନ କରିବ, ଭ୍ରାତୃକନ୍ୟା ଗମନ କରିବ, ଗୁରୁପତ୍ନୀ ଗମନ କରିବ, ପୁତ୍ରବଧୂ ଗମନ କରିବ, ଭ୍ରାତୃପତ୍ନୀ ଗମନ କରିବ, ମାତୁଳାନୀ ଗମନ କରିବ, ଅଥବା ସ୍ୱଗୋତ୍ର ସମ୍ଭୂତା କୌଣସି କନ୍ୟା ଗମନ କରିବ, ତାହାକୁ ତିନଗୋଟି ପ୍ରାଜାପତ୍ୟବ୍ରତ କରିବାକୁ ହେବ । ୧୩ ।

ଅନନ୍ତର ଗୋମିଥୁନ ଦକ୍ଷିଣା ପ୍ରଦାନ କରି ଶୁଦ୍ଧିଲାଭ କରିବାକୁ ପାରିବ ସନ୍ଦେହ ନାହିଁ । ୧୪ ।

ଯେ ବ୍ୟକ୍ତି ପଶୁ, ବେଶ୍ୟାପ୍ରଭୃତି ଗମନ କରିବ, ଯେ ବ୍ୟକ୍ତି ମହିଷୀ, ଉଷ୍ଟ୍ରୀ, ବାନରୀ, ଗର୍ଦ୍ଦଭୀ ବା ଶୂକରୀ ଗମନ କରିବ, ତାହାକୁ ପ୍ରାଜାପତ୍ୟ ବ୍ରତ ଆଚରଣ କରିବାକୁ ହେବ । ୧୫ ।

ଗୋଗାମୀ ଚ ତ୍ରିରାତ୍ରେଣ ଗାମେକଂ ବ୍ରାହ୍ମଣେ ଦଦତ୍ ।
ମହିଷ୍ୟୁଷ୍ଟ୍ରୀ ଖରୀଗାମୀ ଭୂତ୍ୱା ରାତ୍ରେଣ ଶୁଦ୍ଧ୍ୟତି । ୧୬ ॥
ଡାମରେ ସମରେ ବାପି ଦୁର୍ଭିକ୍ଷେ ବା ଜନକ୍ଷୟେ ।
ବନ୍ଦିଗ୍ରାହେ ଭୟାର୍ତ୍ତେ ବା ସଦା ସ୍ୱସ୍ତ୍ରୀଂ ନିରୀକ୍ଷୟେତ୍ । ୧୭ ॥
ଶୃଗାଲୈଃ ସହ ସମ୍ପର୍କଂ ଯା ନାରୀ କୁରୁତେ ତତଃ ।
ବିପ୍ରାନ୍ ଦଶବରାନ୍ ଗତ୍ୱା ସ୍ୱକଂ ଦୋଷଂ ପ୍ରକାଶୟେତ୍ । ୧୮ ॥
ଆକଣ୍ଠସମ୍ମିତେ କୂପେ ଗୋମୟୋଦକକର୍ଦ୍ଦମେ ।
ତତ୍ର ସ୍ଥିତ୍ୱା ନିରାହାରା ତ୍ୱେକରାତ୍ରେଣ ନିଷ୍କ୍ରମେତ୍ । ୧୯ ।
ସଶିଖଂ ବପନଂ କୃତ୍ୱା ଭୁଞ୍ଜୀୟାଦ୍ ଯାବକୌଦନଂ ।
ତ୍ରିରାତ୍ରମୁପବାସିତ୍ୱା ତ୍ୱେକରାତ୍ରଂ ଜଲେ ବସେତ୍ । ୨୦ ॥
ଶଙ୍ଖପୁଷ୍ପୀଲତାମୂଳଂ ପତ୍ରଞ୍ଚ କୁସୁମଂ ଫଳଂ ।
ସୁବର୍ଣ୍ଣଂ ପଞ୍ଚଗବ୍ୟଞ୍ଚ କ୍ୱାଥୟିତ୍ୱା ପିବେଜ୍ଜଳଂ । ୨୧ ।

---

ଯେ ବ୍ୟକ୍ତି ଗାଭୀ ଗମନ କରିବ, ତାହାକୁ ତ୍ରିରାତ୍ର ଉପବାସପୂର୍ବକ ଗୋଟିଏ ଗୋଦାନ କରିବାକୁ ହେବ । ଯେବେ କେହି ମହିଷୀ ଗମନ, ଉଷ୍ଟ୍ରୀ ଗମନ ବା ଖରୀ ଗମନ କରେ, ତାହା ହେଲେ ଏକଦିବାରାତ୍ର ଉପବାସ କରି ସେ ଶୁଦ୍ଧିଲାଭ କରିବାକୁ ପାରିବ । ୧୬ ।

ଡାମର ଅର୍ଥାତ୍ ପରସ୍ପର ମାରାମାରି କଟାକଟି ସମୟରେ, ସଂଗ୍ରାମ ସମୟରେ ଦୁର୍ଭିକ୍ଷସମୟରେ, ମାରିଭୟ ସମୟରେ ବିପକ୍ଷ ଭୂପାଳକର୍ତ୍ତୃକ ବନ୍ଦୀ କରି ନେଉଥିବା ସମୟରେ ଓ ଭୟୋପସ୍ଥିତ ସମୟରେ ସର୍ବଦା ନିଜ ପତ୍ନୀକୁ ନିରୀକ୍ଷଣ କରିବ । ୧୭ ।

ଯେ ନାରୀ ଶୃଗାଳ ସହିତ ସଂସର୍ଗ କରିବ, ପ୍ରଧାନ ଦଶଜଣ ବ୍ରାହ୍ମ-ଣଙ୍କ ନିକଟ ଗମନକରି ତାହାର ନିଜଦୋଷ ପ୍ରକାଶ କରିବାକୁ ହେବ । ୧୮ ।

ଗୋମୟ ଜଳଦ୍ୱାରା କର୍ଦ୍ଦମମୟ କୂପମଧ୍ୟରେ ସେ କଣ୍ଠଦେଶପର୍ଯ୍ୟନ୍ତ ମଗ୍ନ କରି ଏକରାତ୍ରି ନିରାହାର ଥାଇଁ ପଶ୍ଚାତ୍ ତହିଁରୁ ଉତ୍ଥିତ ହେବ । ୧୯ ।

ପରେ ଶିଖାସମେତ ସମୁଦାୟ ମସ୍ତକ ମୁଣ୍ଡନ କରି ଯାବକୌଦନ ଭୋଜନ କରିବ । ଅନନ୍ତର ତ୍ରିରାତ୍ରି ଉପବାସ କରି ଏକରାତ୍ରି ଜଳରେ ବାସ କରିବ । ୨୦ ।

ତତ୍ପରେ ଶଙ୍ଖପୁଷ୍ପୀ-ଲତାର ମୂଳ ପତ୍ର ଫଳ ଓ ପୁଷ୍ପ ଏବଂ ସୁବର୍ଣ୍ଣ ଓ ପଞ୍ଚଗବ୍ୟ ଏକତ୍ର ନିଃଶେଷିତ କରି ତହିଁର କ୍ୱାଥ ପାନକରିବ । ୨୧ ।

ଏକଭକ୍ତଂ ଚରେତ୍ ପଶ୍ଚାତ୍ ଯାବତ୍ ପୁଷ୍ପବତୀ ଭବେତ୍ ।
ବ୍ରତଂ ଚରତି ଯଦ୍‌ଯାବତ୍ତାବତ୍ ସଂବସତେ ବହିଃ ॥ ୧୨ ॥
ପ୍ରାୟଶ୍ଚିତ୍ତେ ତତଶ୍ଚୀର୍ଣ୍ଣେ କୁର୍ଯ୍ୟାଦ୍‌ବ୍ରାହ୍ମଣଭୋଜନଂ ।
ଗୋଦ୍ୱୟଂ ଦକ୍ଷିଣାଂ ଦଦ୍ୟାଚ୍ଛୁଦ୍ଧିଃ ପରାଶରୋ ଽବ୍ରବୀତ୍ ॥ ୧୩ ॥
ଚାତୁର୍ବର୍ଣ୍ଣସ୍ୟ ନାରୀଣାଂ କୃଚ୍ଛ୍ରଚାନ୍ଦ୍ରାୟଣଂ ବ୍ରତଂ
ଯଥା ଭୂମିସ୍ତଥା ନାରୀ ତସ୍ମାତ୍ତାଂ ନତୁ ଦୂଷୟେତ୍ ॥ ୧୪ ॥
ବନ୍ଦିଗ୍ରାହେଣ ଯା ଭୁକ୍ତା ହତ୍ୱା ବଦ୍ଧ୍ୱା ବଲାଦ୍‌ଭୟାତ୍ ।
କୃତ୍ୱା ସାନ୍ତପନଂ କୃଚ୍ଛ୍ରଂ ଶୁଦ୍ଧ୍ୟେତ୍ ପାରାଶରୋ ଽବ୍ରବୀତ୍ ॥ ୧୫ ॥
ସକୃଦ୍‌ଭୁକ୍ତା ତୁ ଯା ନାରୀ ନେଚ୍ଛନ୍ତୀ ପାପକର୍ମ୍ମଭିଃ ।
ପ୍ରାଜାପତ୍ୟେନ ଶୁଦ୍ଧ୍ୟେତ ଋତୁପ୍ରସ୍ରବଣେନ ତୁ ॥ ୧୬ ॥

---

ପରେ ଯେପର୍ଯ୍ୟନ୍ତ ଋତୁମତୀ ନ ହୁଏ, ସେପର୍ଯ୍ୟନ୍ତ ଏକଥାକରେ ଏକବାରମାତ୍ର ଆହାର କରୁଥିବ । ଯେପର୍ଯ୍ୟନ୍ତ ଏହି ବ୍ରତାନୁଷ୍ଠାନ କରିବ, ସେପର୍ଯ୍ୟନ୍ତ ଗୃହରେ ପ୍ରବେଶ କରି ପାରିବ ନାହିଁ । ସେପର୍ଯ୍ୟନ୍ତ ତାହାକୁ ବାହାରରେ ବାସ କରିବାକୁ ହେବ । ୧୨ ।

ଏହିରୂପେ ବ୍ରତାନୁଷ୍ଠାନ ସମ୍ପୂର୍ଣ୍ଣ ହେଲେ ବ୍ରାହ୍ମଣଭୋଜନ କରାଇ ଗୋଟିଏ ବୃଷ ଓ ଗୋଟିଏ ଗାଭୀ ଦକ୍ଷିଣା ପ୍ରଦାନ କରିବାକୁ ହେବ । ପରାଶରଙ୍କର ମତ ଏହି ଯେ ଏହିପରି ପ୍ରାୟଶ୍ଚିତ୍ତ କଲେ ଶୁଦ୍ଧି ଲାଭ କରି ପାରେ । ୧୩ ।

ଚତୁର୍ବର୍ଣ୍ଣର ସ୍ତ୍ରୀ ଦୂଷିତା ହେଲେ କୃଚ୍ଛ୍ରଚାନ୍ଦ୍ରାୟଣ ବ୍ରତ ଅନୁଷ୍ଠାନ କରିବ, ଭୂମି ଓ ନାରୀଏ ଦୁହେଁ ସମାନ । ଏହି ଉଭୟଙ୍କୁ ଏକ କାଳରେ ଦୂଷିତ ଓ ଅପବିତ୍ର ଜ୍ଞାନ କରିବ ନାହିଁ । ୧୪ ।

ଯେଉଁ ନାରୀକୁ ବନ୍ଦୀ କରି ନେଇଯାଇ ଅନ୍ୟ ଉପଭୋଗ କରିଅଛି, ଯେଉଁ ନାରୀ ପ୍ରହାରଦ୍ୱାରା, ବନ୍ଧନଦ୍ୱାରା, ବଳଦ୍ୱାରା ଓ ଭୟ ପ୍ରଦର୍ଶନଦ୍ୱାରା ଉପଭୁକ୍ତା ହୋଇଅଛି, ପରାଶର ବୋଲନ୍ତି, କୃଚ୍ଛ୍ରସାନ୍ତପନବ୍ରତ କରି ସେ ଶୁଦ୍ଧି ଲାଭ କରି ପାରିବ । ୧୫ ।

ଯେଉଁ ନାରୀ ପରପୁରୁଷକର୍ତ୍ତୃକ ଏକବାର ମାତ୍ର ଉପଭୁକ୍ତା ହୋଇଅଛି, ଏବଂ ଯେଉଁ ନାରୀ ତହିଁପରେ ଆଉ ପାପକର୍ମ୍ମ କରିବାକୁ ଇଚ୍ଛା କରେ ନାହିଁ, ସେ ଏକମାତ୍ର ପ୍ରାଜାପତ୍ୟବ୍ରତଦ୍ୱାରା ଓ ଋତୁ ପ୍ରସ୍ରବଣଦ୍ୱାରା ଶୁଦ୍ଧିଲାଭ କରିବ । ୧୬ ।

ପତତ୍ୟର୍ଦ୍ଧଂ ଶରୀରସ୍ୟ ଯସ୍ୟ ଭାର୍ଯ୍ୟା ସୁରାଂ ପିବେତ୍ ।
ପତିତାର୍ଦ୍ଧଶରୀରସ୍ୟ ନିଷ୍କୃତିର୍ନ ବିଧୀୟତେ ॥ ୨୭ ॥
ଗାୟତ୍ରୀଂ ଜପମାନସ୍ତୁ କୃଚ୍ଛ୍ରଂ ସାନ୍ତପନଂ ଚରେତ୍ ॥ ୨୮ ॥
ଗୋମୂତ୍ରଂ ଗୋମୟଂ କ୍ଷୀରଂ ଦଧି ସର୍ପିଃ କୁଶୋଦକଂ ।
ଏକରାତ୍ର୍ୟୁପବାସଶ୍ଚ କୃଚ୍ଛ୍ରଂ ସାନ୍ତପନଂ ସ୍ମୃତଂ ॥ ୨୯ ॥
ଜାରେଣ ଜନୟେଦ୍ଗର୍ଭଂ ଗତେ ତ୍ୟକ୍ତେ ମୃତେ ପତୌ ।
ତାଂ ତ୍ୟଜେଦପରେ ରାଷ୍ଟ୍ରେ ପତିତାଂ ପାପକାରିଣୀଂ ॥ ୩୦ ॥
ବ୍ରାହ୍ମଣୀ ତୁ ଯଦା ଗଚ୍ଛେତ୍ ପରପୁଂସା ସମନ୍ୱିତା ।
ସା ତୁ ନଷ୍ଟା ବିନିର୍ଦ୍ଦିଷ୍ଟା ନ ତସ୍ୟା ଗମନଂ ପୁନଃ ॥ ୩୧ ॥
କାମାନ୍ମୋହାଦ୍ୱଦା ଗଚ୍ଛେତ୍ତ୍ୟକ୍ତ୍ୱା ବନ୍ଧୂନ୍ ସୁତାନ୍ ପତିଂ ।
ସା ତୁ ନଷ୍ଟା ପରେ ଲୋକେ ମାନୁଷେଷୁ ବିଶେଷତଃ ॥ ୩୨ ॥

---

ଯାହାଙ୍କର ଭାର୍ଯ୍ୟା ସୁରାପାନ କରିବ, ତାହାଙ୍କ ଶରୀରର ଅର୍ଦ୍ଧାଂଶ ପତିତ ହେବ । ଯାହାଙ୍କ ଶରୀରର ଅର୍ଦ୍ଧାଂଶ ପତିତ ହୋଇଅଛି, ତାହାଙ୍କୁ ନରକଗାମୀ ହେବାକୁ ହେବ । ୨୭ ।

ଯେତେବେଳେ କୃଚ୍ଛ୍ର-ସାନ୍ତପନ ବ୍ରତାଚରଣ କରିବ, ସେତେ-ବେଳେ ନୟତ ଗାୟତ୍ରୀଜପ କରିବାକୁ ହେବ । ୨୮ ।

ଏହି କୃଚ୍ଛ୍ର-ସାନ୍ତପନ ବ୍ରତ ସମୟରେ ଗୋମୂତ୍ର, ଗୋମୟ, ଦୁଗ୍ଧ, ଦଧି, ଘୃତ, ଓ କୁଶଜଳ ପାନକରି ଏକରାତ୍ରି ଉପବାସ କରିବାକୁ ହେବ । ୨୯ ।

ଭର୍ତ୍ତା ବିଦେଶ ଗମନକଲେ, ଭର୍ତ୍ତାର ମୃତ୍ୟୁ ହେଲେ ଭର୍ତ୍ତାକୁ ପରିତ୍ୟାଗକରି ଯେଉଁ ନାରୀ ଜାରଜଗର୍ଭ ଧାରଣ କରେ, ପତିତା ପାପକାରିଣୀ ସେହି ନାରୀକୁ ଭିନ୍ନରାଜ୍ୟରେ ପରିତ୍ୟାଗ କରିବ । ୩୦ ।

ଯେବେ କୌଣସି ବ୍ରାହ୍ମଣୀ ପରପୁରୁଷ ସହିତ ବାହାରିହୋଇ ଯାଏ, ତାହା ହେଲେ ତାହାକୁ ନଷ୍ଟା ବୋଲାଯାଏ । ତାହାକୁ ପୁନର୍ବାର ଗୃହକୁ ନେବାକୁ ହୁଏ ନାହିଁ । ୩୧ ।

ଯେବେ କୌଣସି ରମଣୀ କାମହେତୁ ଓ ମୋହହେତୁ ଭର୍ତ୍ତାକୁ ବା ପୁତ୍ରମାନଙ୍କୁ ପରିତ୍ୟାଗପୂର୍ବକ ସ୍ୱୟଂ ବାହାରିହୋଇ ଯାଏ ଏବଂ ଯେବେ ସେ ଦଶଦିନମଧ୍ୟରେ ଗୃହକୁ ପ୍ରତ୍ୟାଗମନ ନ କରେ ତାହା ହେଲେ ତାହାର ଆଉ ପ୍ରାୟଶ୍ଚିତ୍ତଦ୍ୱାରା ଶୁଦ୍ଧି ନାହିଁ । ଅତଏବ ନାରୀଙ୍କର କର୍ତ୍ତବ୍ୟ

ଦଶମେ ତୁ ଦିନେ ପ୍ରାପ୍ତେ ପ୍ରାୟଶ୍ଚିତ୍ତଂ ନ ବିଦ୍ୟତେ ।
ଦଶାହଂ ନ ତ୍ୟଜେନ୍ନାରୀ ତ୍ୟଜେନ୍ନଷ୍ଟଶ୍ରୁତା ତଥା ॥ ୩୩ ॥
ଭର୍ତ୍ତ୍ତ୍ରୈବ ଚରେତ୍ କୃଚ୍ଛ୍ରଂ କୃଚ୍ଛ୍ରାର୍ଦ୍ଧଂ ଚୈବ ବାନ୍ଧବାଃ ।
ତେଷାଂ ଭୁକ୍ତ୍ୱା ଚ ପୀତ୍ୱା ଚ ଅହୋରାତ୍ରେଣ ଶୁଦ୍ଧ୍ୟତି ॥ ୩୪ ॥
ବ୍ରାହ୍ମଣୀ ତୁ ଯଦା ଗଚ୍ଛେତ୍ ପରପୁଂସା ବିବର୍ଜ୍ଜିତା ।
ଗତ୍ୱା ପୁଂସାଂ ଶତଂ ଯାତି ତ୍ୟଜେୟୁସ୍ତାଂ ତୁ ଗୋତ୍ରିଣଃ ॥ ୩୫ ॥
ପୁଂସୋ ଯଦି ଗୃହଂ ଗଚ୍ଛେତ୍ତଦଶୁଦ୍ଧଂ ଗୃହଂ ଭବେତ୍ ।
ପିତୃମାତୃଗୃହଂ ଯଚ୍ଚ ଜାରସ୍ୟୈବ ତୁ ତଦ୍ଗୃହଂ । ୩୬ ।
ଉଲ୍ଲିଖ୍ୟ ତଦ୍ଗୃହଂ ପଶ୍ଚାତ୍ ପଞ୍ଚଗବ୍ୟେନ ଶୁଦ୍ଧ୍ୟତି ।
ତ୍ୟଜେନ୍ମୃଣ୍ମୟପାତ୍ରାଣି ବସ୍ତ୍ରଂ କାଷ୍ଠଂ ଚ ଶୋଧୟେତ୍ । ୩୭ ।

---

ଏହିପରି ଦଶଦିବସ ଭର୍ତ୍ତାଙ୍କୁ ପରିତ୍ୟାଗ କରି ଅନ୍ୟତ୍ର ଯିବ ନାହିଁ । ଯେଉଁ ନାରୀ ଭର୍ତ୍ତାଙ୍କୁ ପରିତ୍ୟାଗ କରି ଦଶଦିବସପର୍ଯ୍ୟନ୍ତ ଅନ୍ୟତ୍ର ବାସ କରେ, ତାହାକୁ ଭ୍ରଷ୍ଟା ବୋଲାଯାଏ । ୩୩ ।

ଉକ୍ତ ନାରୀସହିତ ପୁନର୍ବାର ସଂସର୍ଗ କଲେ ଭର୍ତ୍ତାଙ୍କୁ କୃଚ୍ଛ୍ରବ୍ରତ ଏବଂ ତାହାର ବନ୍ଧୁମାନଙ୍କୁ ଅର୍ଦ୍ଧକୃଚ୍ଛ୍ର ବ୍ରତାନୁଷ୍ଠାନ କରିବାକୁ ହେବ । ଯେଉଁସମସ୍ତ ବ୍ୟକ୍ତି ଏମାନଙ୍କର ଅନ୍ନ ଭୋଜନ ବା ଜଳ ପାନ କରିବେ, ସେମାନଙ୍କୁ ଏକ ଦିବାରାତ୍ର ଉପବାସ କରିବାକୁ ହେବ । ଏହାଦ୍ୱାରା ସେମାନେ ତତ୍ସଂସର୍ଗଜନିତପାପରୁ ମୁକ୍ତ ହୋଇପାରିବେ । ୩୪ ।

ଯେବେ କୌଣସି ବ୍ରାହ୍ମଣୀ ପରପୁରୁଷର ସମଭିବ୍ୟାହାରିଣୀ ନ ହୋଇ ଏକାକିନୀ ବହିର୍ଗତା ହୋଇଯାଏ ଏବଂ ଯେବେ ସେ ଏକଶତ-ପୁରୁଷଙ୍କ ସହିତ ସଂସର୍ଗ କରେ, ତାହା ହେଲେ ତାହାଙ୍କ ଜ୍ଞାତିମାନେ ତାହାକୁ ପରିତ୍ୟାଗ କରିବେ । ୩୫ ।

ଏହି ନାରୀ ଯେବେ କୌଣସିଉପପତିଗୃହରେ ଅବସ୍ଥାନ କରେ ତାହା ହେଲେ ସେହି ଗୃହ ଅପବିତ୍ର ହେବ । ଯେବେ ସେହି ଉପପତି ଗୃହକୁ ପିତାମାତାଙ୍କ ଗୃହ ବୋଲି ପଶ୍ଚାତ୍ । ୩୬ ।

ଉଲ୍ଲେଖ କରେ, ତାହା ହେଲେ ପଞ୍ଚଗବ୍ୟଦ୍ୱାରା ସେହିଗୃହ ପବିତ୍ର ହୋଇପାରେ । ପରନ୍ତୁ ସେହି ଗୃହସ୍ଥିତ ମୃଣ୍ମୟପାତ୍ର ସମୁଦାୟ ପରିତ୍ୟାଗ-ପୂର୍ବକ ବସ୍ତ୍ର ଓ କାଷ୍ଠମୟ ଦ୍ରବ୍ୟ ଶୋଧନ କରିନେବେ । ୩୭ ।

ସମ୍ମାର୍ଜନ୍ ଶୋଧୟେତ୍ ସର୍ବାନ୍ ଗୋକେଶୈଶ୍ଚ ଫଳୋଦ୍ଭବାନ୍ ।
ତାମ୍ରାଣି ପଞ୍ଚଗବ୍ୟେନ କାଂସ୍ୟାନି ଦଶ ଭସ୍ମଭିଃ ॥ ୩୮ ॥
ପ୍ରାୟଶ୍ଚିତ୍ତଂ ଚରେଦ୍‌ବିପ୍ରୋ ବ୍ରାହ୍ମଣୈରୁପପାଦିତଂ ।
ଗୋଦ୍ୱୟଂ ଦକ୍ଷିଣାଂ ଦଦ୍ୟାତ୍ ପ୍ରାଜାପତ୍ୟଂ ସମାଚରେତ୍ ॥ ୩୯ ॥
ଇତରେଷାମହୋରାତ୍ରଂ ପଞ୍ଚଗବ୍ୟେନ ଶୋଧନଂ ।
ସପୁତ୍ରଃ ସହଭୃତ୍ୟଶ୍ଚ କୁର୍ଯ୍ୟାଦ୍‌ବ୍ରାହ୍ମଣଭୋଜନଂ ॥ ୪୦ ॥
ଆକାଶଂ ବାୟୁରଗ୍ନିଶ୍ଚ ମେଧ୍ୟଂ ଭୂମିଗତଂ ଜଳଂ ।
ନ ଦୁଷ୍ୟନ୍ତୀହ ଦର୍ଭାଶ୍ଚ ଯଜ୍ଞେଷୁ ଚମସାସ୍ତଥା ॥ ୪୧ ॥
ଉପବାସୈର୍ବ୍ରତୈଃ ପୁଣ୍ୟୈଃ ସ୍ନାନସନ୍ଧ୍ୟାର୍ଚ୍ଚନାଦିଭିଃ ।
ଜପୈର୍ହୋମୈସ୍ତଥା ଦାନୈଃ ଶୁଦ୍ଧ୍ୟନ୍ତେ ବ୍ରାହ୍ମଣାଃ ସଦା ॥ ୪୨ ॥

ଇତି ପାରାଶରେ ଧର୍ମ୍ମଶାସ୍ତ୍ରେ ଦଶମୋଽଧ୍ୟାୟଃ ।

---

ଫଳ ଓ ଅନ୍ୟ ସକଳ ଦ୍ରବ୍ୟ ଗୋକେଶଦ୍ୱାରା ଶୋଧନ କରିବ ତାମ୍ରପାତ୍ର ସମୁଦାୟ ପଞ୍ଚଗବ୍ୟଦ୍ୱାରା ଏବଂ କାଂସ୍ୟପାତ୍ର ସମୁଦାୟ ଭସ୍ମସହା-ଯୋଗରେ ଦଶଥର ମାର୍ଜ୍ଜନଦ୍ୱାରା ଶୋଧିତ ହେବ । ୩୮ ।

ପରେ ଯେ ବ୍ରାହ୍ମଣଙ୍କ ଗୃହରେ ସେହି ବ୍ୟଭିଚାରିଣୀ ବାସ କରି-ଥିବ, ସେହି ବ୍ରାହ୍ମଣ, ବ୍ରାହ୍ମଣଙ୍କ ନିକଟରୁ ବ୍ୟବସ୍ଥା ନେଇ ଗୋଟିଏ ପ୍ରାଜାପତ୍ୟବ୍ରତ ଆଚରଣ କରି ଏକ ବୃଷ ଓ ଏକ ଗାଭୀ ଦକ୍ଷିଣା ପ୍ରଦାନ କରିବ । ୩୯ ।

ସେହି ବ୍ୟଭିଚାରିଣୀ ଯେବେ ଇତରଜାତି ଗୃହରେ ବାସ କରିଥାଏ, ତାହା ହେଲେ ସେ ଏକଦିବାରାତ୍ର ଉପବାସ କରି ପଞ୍ଚଗବ୍ୟଦ୍ୱାରା ଶୁଦ୍ଧି-ଲାଭକରି ପାରିବ । ପରେ ସେହି ବ୍ୟକ୍ତି ସ୍ୱୟଂ ଓ ତାହାର ପୁତ୍ର ଭୃତ୍ୟ ପ୍ରଭୃତି ପରିବାରଗଣ ସମସ୍ତେ ବ୍ରାହ୍ମଣ ଭୋଜନ କରାଇବେ । ୪୦ ।

ଆକାଶ ବାୟୁ ଅଗ୍ନି ଭୂମିସ୍ଥିତଜଳ ଦର୍ଭ ଓ ଯଜ୍ଞସ୍ଥିତ ଚମସ, ଏ ସମୁଦାୟ ଅପବିତ୍ର ହୁଏ ନାହିଁ । ୪୧ ।

ବ୍ରାହ୍ମଣଗଣ ସକଳ ସମୟରେ ଉପବାସଦ୍ୱାରା, ବ୍ରତଦ୍ୱାରା, ପୁଣ୍ୟକର୍ମ୍ମ-ଦ୍ୱାରା, ସ୍ନାନଦ୍ୱାରା, ସନ୍ଧ୍ୟାବନ୍ଦନଦ୍ୱାରା, ପୂଜାଦ୍ୱାରା, ଜପଦ୍ୱାରା, ହୋମଦ୍ୱାରା, ଶୁଦ୍ଧିଲାଭ କରନ୍ତି । ୪୨ ।

ପରାଶରସଂହିତା ଦଶମ ଅଧ୍ୟାୟ ।

---

एकादशोऽध्यायः ।

ଅମେଧ୍ୟରେତୋ ଗୋମାଂସ ଚଣ୍ଡାଳାନ୍ନମଥାପି ବା ।
ଯଦ ଭୁକ୍ତନ୍ତୁ ବିପ୍ରେଣ କୃଚ୍ଛ୍ରଂ ଚାନ୍ଦ୍ରାୟଣଂ ଚରେତ୍ ॥ ୧ ॥
ତଥୈବ କ୍ଷତ୍ରିୟୋ ବୈଶ୍ୟସ୍ତଦର୍ଦ୍ଧନ୍ତୁ ସମାଚରେତ୍ ।
ଶୂଦ୍ରୋଽପ୍ୟେବଂ ଯଦା ଭୁଂକ୍ତେ ପ୍ରାଜାପତ୍ୟଂ ସମାଚରେତ୍ ॥ ୨ ॥
ପଞ୍ଚଗବ୍ୟଂ ପିବେଚ୍ଛୂଦ୍ରୋ ବ୍ରହ୍ମକୂର୍ଚ୍ଚଂ ପିବେଦ୍ଦ୍ୱିଜଃ ।
ଏକଦ୍ୱିତ୍ରିଚତୁର୍ଗାଶ୍ଚ ଦଦ୍ୟାଦ୍ୱିପ୍ରାଦନୁକ୍ରମାତ୍ ॥ ୩ ॥
ଶୂଦ୍ରାନ୍ନଂ ସୂତକସ୍ୟାନ୍ନଂ ଅଭୋଜ୍ୟସ୍ୟାନ୍ନମେବ ଚ ।
ଶଙ୍କିତଂ ପ୍ରତିସିଦ୍ଧାନ୍ନଂ ପୂର୍ବୋଚ୍ଛିଷ୍ଟଂ ତଥୈବ ଚ ॥ ୪ ॥
ଯଦ ଭୁକ୍ତଞ୍ଚ ବିପ୍ରେଣ ଅଜ୍ଞାନାଦାପଦାପି ବା ।
ଜ୍ଞାତ୍ୱା ସମାଚରେତ୍ କୃଚ୍ଛ୍ରଂ ବ୍ରହ୍ମକୂର୍ଚ୍ଚଂ ତୁ ପାବନଂ ॥ ୫ ॥

---

ବ୍ରାହ୍ମଣ ଯେବେ ଅପବିତ୍ରରେତ ଗୋମାଂସ ଅଥବା ଚଣ୍ଡାଳାନ୍ନ ଭୋଜନ କରେ, ତାହା ହେଲେ କୃଚ୍ଛ୍ରଚାନ୍ଦ୍ରାୟଣବ୍ରତ ଆଚରଣ କରିବ ।୧।

ଯେବେ କ୍ଷତ୍ରିୟଜାତ ବା ବୈଶ୍ୟଜାତ ସେହି ସମୁଦାୟ ଭୋଜନ କରେ, ତାହା ହେଲେ ତାହାର ଅର୍ଦ୍ଧ ପ୍ରାୟଶ୍ଚିତ୍ତ କରିବ । ଯେବେ ଶୂଦ୍ର-ଜାତ ସେହି ସମୁଦାୟ ଭୋଜନ କରେ ତାହା ହେଲେ ତାହାକୁ ପ୍ରାଜାପ-ତ୍ୟବ୍ରତ ଆଚରଣ କରିବାକୁ ହେବ । ୨ ।

ଈଦୃଶ ସ୍ଥଳରେ ବ୍ରାହ୍ମଣ କ୍ଷତ୍ରିୟ ଓ ବୈଶ୍ୟ ବ୍ରହ୍ମକୂର୍ଚ୍ଚ ପାନ କରିବେ, ଶୂଦ୍ର ପଞ୍ଚଗବ୍ୟ ପାନ କରି ଶୁଦ୍ଧିଲାଭ କରିବ । ଦକ୍ଷିଣାସ୍ଥଳରେ ବ୍ରାହ୍ମ ଗୋ-ଟିଏ, କ୍ଷତ୍ରିୟ ଦୁଇଗୋଟି, ବୈଶ୍ୟ ତିନିଗୋଟି, ଶୂଦ୍ର ଚାରିଗୋଟି ଗାଈ ପ୍ରଦାନ କରିବ । ୩ ।

ଯେବେ ଶୂଦ୍ରାନ୍ନ, ଅଶୌଚାନ୍ନ, ଅଭୋଜ୍ୟ ଅନ୍ନ, ଶଙ୍କିତ ଅନ୍ନ, ନିଷିଦ୍ଧ ଅନ୍ନ ବା ପୂର୍ବୋଚ୍ଛିଷ୍ଟ ଅନ୍ନ । ୪ ।

ଅଜ୍ଞାନବଶତଃ ଅଥବା ଆପତ୍କାଳେ କୌଣସି ବ୍ରାହ୍ମଣ କର୍ତ୍ତୃକ ଭୁକ୍ତ ହୁଏ, ତାହା ହେଲେ ଯେତେବେଳେ ଜାଣିପାରିବ, ସେତେବେଳେ କୃଚ୍ଛ୍ର-ବ୍ରତ ଆଚରଣ କରି ପବିତ୍ରକାରୀ ବ୍ରହ୍ମକୂର୍ଚ୍ଚ ସେବା କରିବ । ୫ ।

ବ୍ୟାଳୈର୍ନକୁଲମାର୍ଜାରୈରନ୍ନମୁଚ୍ଛିଷ୍ଟିତଂ ଯଦା ।
ତିଳଦର୍ଭୋଦକୈଃ ପ୍ରୋକ୍ଷ୍ୟ ଶୁଦ୍ଧ୍ୟତେ ନାତ୍ର ସଂଶୟଃ ॥ ୬ ॥
ଶୂଦ୍ରୋଽପ୍ୟଭୋଜ୍ୟଂ ଭୁକ୍ତ୍ୱାନ୍ନଂ ପଞ୍ଚଗବ୍ୟେନ ଶୁଦ୍ଧ୍ୟତି ।
କ୍ଷତ୍ରିୟୋ ବାପି ବୈଶ୍ୟଶ୍ଚ ପ୍ରାଜାପତ୍ୟେନ ଶୁଦ୍ଧ୍ୟତି ॥ ୭ ॥
ଏକପଙ୍କ୍ତ୍ୟୁପବିଷ୍ଟାନାଂ ବିପ୍ରାଣାଂ ସହଭୋଜନେ ।
ଯଦ୍ୟେକୋଽପି ତ୍ୟଜେତ୍ ପାତ୍ରଂ ଶେଷମନ୍ନଂ ନ ଭୋଜୟେତ୍ ।୮।
ମୋହାଦ୍ଭୁଙ୍କ୍ତେ ଲୋଭତସ୍ତ୍ୱେବ ପଙ୍କ୍ତାବୁଚ୍ଛିଷ୍ଟଭୋଜନେ ।
ପ୍ରାୟଶ୍ଚିତ୍ତଂ ଚରେଦ୍ୱିପ୍ରଃ କୃଚ୍ଛ୍ରଂ ସାନ୍ତପନଂ ତଥା ॥ ୯ ॥
ପୀୟୂଷଶ୍ୱେତଲଶୁନବୃନ୍ତାକଫଲଗୃଞ୍ଜନଂ ।
ପଲାଣ୍ଡୁଂ ବୃକ୍ଷନିର୍ଯ୍ୟାସଂ ଦେବସ୍ୱଂ କବକାଣି ଚ ॥ ୧୦ ॥

---

ଯେବେ ନକୁଲକର୍ତ୍ତୃକ ମାର୍ଜ୍ଜାରକର୍ତ୍ତୃକ, ବା ସର୍ପାଦକର୍ତ୍ତୃକ ଅନ୍ନ ଉଚ୍ଛିଷ୍ଟ ହୁଏ, ତାହା ହେଲେ ତିଳସହିତ କୁଶଜଳଦ୍ୱାରା ପ୍ରୋକ୍ଷିତ କଲେ ସେହି ଅନ୍ନ ଶୁଦ୍ଧ ହେବ ସନ୍ଦେହ ନାହିଁ । ୬ ।

ଯେବେ ଶୂଦ୍ର ଅଭୋଜ୍ୟ ଅନ୍ନ ଭୋଜନ କରେ, ତାହା ହେଲେ ସେ ପଞ୍ଚଗବ୍ୟଦ୍ୱାରା ଶୁଦ୍ଧିଲାଭ କରିପାରିବ । ଯେବେ କ୍ଷତ୍ରିୟ ବା ବୈଶ୍ୟ ସେହିରୂପ ଅଭୋଜ୍ୟ ଅନ୍ନ ଭୋଜନ କରେ, ତାହା ହେଲେ ଶୁଦ୍ଧିଲାଭନିମିତ୍ତ ତାହାକୁ ଏକ ପ୍ରାଜାପତ୍ୟବ୍ରତ ଅନୁଷ୍ଠାନ କରିବାକୁ ହେବ ।୭

ଯେବେ ଅନେକ ବ୍ରାହ୍ମଣ ଏକପଙ୍କ୍ତିରେ ଉପବିଷ୍ଟ ହୋଇ ଭୋଜନ କରନ୍ତି ଏବଂ ଯେବେ ସେମାନଙ୍କ ମଧ୍ୟରେ ଏକବ୍ୟକ୍ତି ପାତ୍ର ପରିତ୍ୟାଗପୂର୍ବକ ଉଠିଯାଆନ୍ତି, ତାହା ହେଲେ ସେହି ବ୍ରାହ୍ମଣମାନଙ୍କ ମଧ୍ୟରେ କେହି ଆଉ ଶେଷ ଅନ୍ନ ଭୋଜନ କରିପାରିବେ ନାହିଁ । ଅର୍ଥାତ୍ ସମସ୍ତଙ୍କୁହିଁ ପାତ୍ର ପରିତ୍ୟାଗ କରି ଉଠିଯିବାକୁ ହେବ । ୮ ।

ଯେବେ କୌଣସି ବ୍ରାହ୍ମଣ ଲୋଭହେତୁ ବା ମୋହହେତୁ ପଙ୍କ୍ତିଉଚ୍ଛିଷ୍ଟ ଭୋଜନ କରେ, ତାହା ହେଲେ ତତ୍ପାପକ୍ଷୟନିମିତ୍ତ ତାହାକୁ କୃଚ୍ଛ୍ରସାନ୍ତପନବ୍ରତ ଆଚରଣ କରିବାକୁ ହେବ । ୯ ।

ଯେବେ କୌଣସି ବ୍ରାହ୍ମଣ ଅଜ୍ଞାନବଶତଃ ଦୁଗ୍ଧପର ଶ୍ୱେତବର୍ଣ୍ଣ ଲଶୁଣ, ବା ବୃନ୍ତାକଫଳ, ଗୃଞ୍ଜନ ( ଗଞ୍ଜେଇ ) ପଲାଣ୍ଡୁ, ବୃକ୍ଷନିର୍ଯ୍ୟାସ ଦେବସ୍ୱ ( ଖର୍ଜ୍ଜୁର ରସପ୍ରଭୃତି ) କରକା । ୧୦ ।

ଉଷ୍ଟ୍ରୀକ୍ଷୀରମଜାକ୍ଷୀରମଜ୍ଞାନାଦ୍ଭୁଞ୍ଜତେ ଦ୍ୱିଜଃ ।
ତ୍ରିରାତ୍ରମୁପବାସୀ ସ୍ୟାତ୍ପଞ୍ଚଗବ୍ୟେନ ଶୁଦ୍ଧ୍ୟତି ॥ ୧୧ ॥
ମଣ୍ଡୂକଂ ଭକ୍ଷୟିତ୍ୱା ଚ ମୂଷିକାମାଂସମେବ ଚ ।
ଜ୍ଞାତ୍ୱା ବିପ୍ରସ୍ତ୍ୱହୋରାତ୍ରଂ ଯାବକାନ୍ନେନ ଶୁଦ୍ଧ୍ୟତି ॥ ୧୨ ॥
କ୍ଷତ୍ରିୟୋ ବାପି ବୈଶ୍ୟୋ ବା କ୍ରିୟାବନ୍ତୌ ଶୁଚିବ୍ରତୌ ।
ତଦ୍ଗୃହେଷୁ ଦ୍ୱିଜୈର୍ଭୋଜ୍ୟଂ ହବ୍ୟକବ୍ୟେଷୁ ନିତ୍ୟଶଃ ॥ ୧୩ ॥
ଘୃତଂ ତୈଳଂ ତଥା କ୍ଷୀରଂ ଗୁଡ଼ଂ ତୈଳେନ ପାଚିତଂ ।
ଗତ୍ୱା ନଦୀତଟେ ବିପ୍ରୋ ଭୁଞ୍ଜୀୟାଚ୍ଛୂଦ୍ରଭୋଜନଂ ॥ ୧୪ ॥
ଅଜ୍ଞାନାଦ୍ଭୁଞ୍ଜତେ ବିପ୍ରାଃ ସୂତକେ ମୃତକେଽପି ବା ।
ପ୍ରାୟଶ୍ଚିତ୍ତଂ କଥଂ ତେଷାଂ ବର୍ଣ୍ଣେ ବର୍ଣ୍ଣେ ବିନିର୍ଦ୍ଦିଶେତ୍ ॥ ୧୫ ॥
ଗାୟତ୍ର୍ୟଷ୍ଟସହସ୍ରେଣ ଶୁଦ୍ଧିଃ ସ୍ୟାଚ୍ଛୂଦ୍ରସୂତକେ ।

---

ଉଷ୍ଟ୍ରୀଦୁଗ୍ଧ ବା ଛାଗୀଦୁଗ୍ଧ ଭକ୍ଷଣ କରନ୍ତି, ତାହା ହେଲେ ସେ ତ୍ରିରାତ୍ର ଉପବାସୀ ଥାଇ ପଶ୍ଚାତ୍ ପଞ୍ଚଗବ୍ୟ ପାନ କଲେ ଶୁଦ୍ଧିଲାଭ କରି ପାରିବେ । ୧୧ ।

ଯେବେ କୌଣସି ବ୍ରାହ୍ମଣ ଅଜ୍ଞାନପ୍ରଯୁକ୍ତ ମଣ୍ଡୂକ ବା ମୂଷିକ-ମାଂସ ଭକ୍ଷଣ କରନ୍ତି, ତାହା ହେଲେ ଯେତେବେଳେ ଜାଣିପାରିବେ, ସେତେବେଳେ ଏକ ଦିବାରାତ୍ର ଉପବାସୀ ଥାଇ ପଶ୍ଚାତ୍ ଯାବକାନ୍ନ ଭୋଜନ କଲେ ଶୁଦ୍ଧିଲାଭ କରି ପାରିବେ । ୧୨ ।

ଯେବେ କ୍ଷତ୍ରିୟ ବା ବୈଶ୍ୟ ବିଶୁଦ୍ଧାଚାର ଓ କ୍ରିୟାବାନ୍ ହୁଏ, ତାହା ହେଲେ ବ୍ରାହ୍ମଣମାନେ ସକଳସମୟରେ ଦୈବ ଓ ପୈତ୍ର୍ୟକର୍ମ-ରେ ତାହାଙ୍କ ଗୃହରେ ଭୋଜନ କରିପାରିବେ । ୧୩ ।

ବ୍ରାହ୍ମଣ ନଦୀତୀରକୁ ଗମନପୂର୍ବକ ଶୂଦ୍ରାନ୍ନ, ଘୃତ, ତୈଳ, ଦୁଗ୍ଧ, ଗୁଡ଼ ଓ ତୈଳପକ୍ୱଦ୍ରବ୍ୟ ଭୋଜନ କରି ପାରିବ । ୧୪ ।

ବ୍ରାହ୍ମଣମାନେ ଅଜ୍ଞାନ ହେତୁ ଯେବେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ବା ଶୂଦ୍ରଙ୍କର ସୂତକାଶୌଚାନ୍ନ ବା ମୃତକାଶୌଚାନ୍ନ ଭୋଜନ କରନ୍ତି, ତାହା ହେଲେ ଜାତିବିଶେଷ ଅନୁସାରେ ଭିନ୍ନ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ହେବ ॥

ଶୂଦ୍ରର ଅଶୌଚାନ୍ନ ଭୋଜନ କଲେ ବ୍ରାହ୍ମଣଙ୍କୁ ଅଷ୍ଟସହସ୍ର ଗାୟତ୍ରୀ ଜପ କରିବାକୁ ହେବ । ବୈଶ୍ୟର ଅଶୌଚାନ୍ନ ଭୋଜନ କଲେ ବ୍ରାହ୍ମଣଙ୍କୁ ପଞ୍ଚସହସ୍ର ଜପ କରିବାକୁ ହେବ । କ୍ଷତ୍ରିୟର ଅଶୌଚାନ୍ନ ଭୋଜନ

ବୈଶ୍ୟା ପଞ୍ଚସହସ୍ରେଣ ତ୍ରିସହସ୍ରେଣ କ୍ଷତ୍ରିୟଃ ॥ ୧୬ ॥
ବ୍ରାହ୍ମଣସ୍ୟ ଯଦା ଭୁଙ୍କ୍ତେ ପ୍ରାଣାୟାମେନ ଶୁଦ୍ଧ୍ୟତି ।
ଅଥବା ବାମଦେବ୍ୟେନ ସାମ୍ନା ଚୈକେନ ଶୁଦ୍ଧ୍ୟତି ॥ ୧୭ ॥
ଶୁଷ୍କାନ୍ନଂ ଗୋରସଂ ସ୍ନେହଂ ଶୂଦ୍ରବେଶ୍ମନ ଆଗତଂ ।
ପକ୍ୱଂ ବିପ୍ରଗୃହେ ପୂତଂ ଭୋଜ୍ୟଂ ତନ୍ମନୁରବ୍ରବୀତ୍ ॥ ୧୮ ॥
ଆପତ୍କାଳେ ତୁ ବିପ୍ରେଣ ଭୁକ୍ତଂ ଶୂଦ୍ରଗୃହେ ଯଦି ।
ମନସ୍ତାପେନ ଶୁଦ୍ଧ୍ୟେତ ଦ୍ରୁପଦାଂ ବା ଶତଂ ଜପେତ୍ ॥ ୧୯ ॥
ଦାସନାପିତଗୋପାଳକୁଳମିତ୍ରାର୍ଦ୍ଧସୀରିଣଃ ।
ଏତେ ଶୂଦ୍ରେଷୁ ଭୋଜ୍ୟାନ୍ନଂ ଯଶ୍ଚାତ୍ମାନଂ ନିବେଦୟେତ୍ ॥ ୨୦ ॥
ଶୂଦ୍ରକନ୍ୟା ସମୁତ୍ପନ୍ନୋ ବ୍ରାହ୍ମଣେନ ତୁ ସଂସ୍କୃତଃ ।

---

ତେବେ ବ୍ରାହ୍ମଣ ତିନିସହସ୍ର ଗାୟତ୍ରୀ ଜପ କରି ଶୁଦ୍ଧି ଲାଭ କରି ପାରିବ । ୧୬ ।

ଯେବେ କୌଣସି ବ୍ରାହ୍ମଣ, ବ୍ରାହ୍ମଣଙ୍କର ଅଶୌଚାନ୍ନ ଭୋଜନ କରନ୍ତି, ତାହା ହେଲେ ପ୍ରାଣାୟାମଦ୍ୱାରା ଶୁଦ୍ଧିଲାଭ କରିବେ । ଅଥବା ବାମଦେବ୍ୟ ସାମପାଠ ଦ୍ୱାରା ଶୁଦ୍ଧିଲାଭ କରି ପାରିବ । ୧୭ ।

ଯେବେ ଶୂଦ୍ରଗୃହରୁ ତଣ୍ଡୁଳ ମସ୍ୟ ପ୍ରଭୃତି ଅପକ୍ୱ ଅନ୍ନ ଦୁଗ୍ଧ, ଘୃତ, ତୈଳ ପ୍ରଭୃତି ପ୍ରେରିତ ହୁଏ, ଏବଂ ଯେବେ ତାହା ବ୍ରାହ୍ମଣଙ୍କ ଗୃହରେ ପାକ କରିବାର ହୁଏ, ତାହା ହେଲେ ତାହା ପବିତ୍ର ଓ ବ୍ରାହ୍ମଣଙ୍କର ଭୋଜ୍ୟ, ଏହା ମନୁ ସ୍ୱୀକାର କରନ୍ତି । ୧୮ ।

ଯେବେ ବ୍ରାହ୍ମଣ ଆପତ୍କାଳରେ ଶୂଦ୍ରଗୃହରେ ଶୂଦ୍ରାନ୍ନ ଭୋଜନ କରନ୍ତି, ତାହା ହେଲେ ସେ ଏକଶତ ଗାୟତ୍ରୀ ଜପ କରି ଅନୁତାପଦ୍ୱାରା ଶୁଦ୍ଧିଲାଭ କରିପାରିବେ । ୧୯ ।

ବ୍ରାହ୍ମଣଗଣ ଶୂଦ୍ରଜାତି ମଧ୍ୟରେ ଦାସ ନାପିତ, ସଦ୍ଗୋପ, କୁଳମିତ୍ର, ଅର୍ଦ୍ଧସୀରୀ ଏବଂ ଯେବ୍ୟକ୍ତି ଆତ୍ମ ସମର୍ପଣ କରେ, ତାହାର ଅନ୍ନ ଭୋଜନ କରିପାରିବେ । ୨୦ ।

ଯେବେ କେହି ଶୂଦ୍ରକନ୍ୟା ଗର୍ଭରେ ବ୍ରାହ୍ମଣଙ୍କଠାରୁ ଉତ୍ପନ୍ନ ହୁଏ, ଏବଂ ବ୍ରାହ୍ମଣଦ୍ୱାରା ଯେବେ ତାହାର ସଂସ୍କାର ହୁଏ, ତାହା ହେଲେ ତାହାକୁ ଦାସ ବୋଲାଯାଇ ପାରେ । ଯେବେ କେହି ସେହିରୂପ ଶୂଦ୍ରକନ୍ୟା

ସଂସ୍କୃତସ୍ତୁ ଭବେଦାସୋ ହ୍ୟସଂସ୍କାରସ୍ତୁ ନାପିତଃ ॥ ୨୧ ॥
କ୍ଷତ୍ରିୟାଚ୍ଛୂଦ୍ରକନ୍ୟାୟାଂ ସମୁତ୍ପନ୍ନସ୍ତୁ ଯଃ ସୁତଃ ।
ସ ଗୋପାଳ ଇତି ଜ୍ଞେୟୋ ଭୋଜ୍ୟୋ ବିପ୍ରୈର୍ନ ସଂଶୟଃ ॥ ୨୨ ॥
ବୈଶ୍ୟକନ୍ୟାସମୁତ୍ପନ୍ନୋ ବ୍ରାହ୍ମଣେନ ତୁ ସଂସ୍କୃତଃ ।
ଅର୍ଦ୍ଧିକଃ ସ ତୁ ବିଜ୍ଞେୟୋ ଭୋଜ୍ୟୋ ବିପ୍ରୈର୍ନ ସଂଶୟଃ ॥ ୨୩ ॥
ଭାଣ୍ଡସ୍ଥିତମଭୋଜ୍ୟେଷୁ ଜଳଂ ଦଧି ଘୃତଂ ପୟଃ ।
ଅକାମତସ୍ତୁ ଯୋ ଭୁଙ୍କ୍ତେ ପ୍ରାୟଶ୍ଚିତ୍ତଂ କଥଂ ଭବେତ୍ ॥ ୨୪ ॥
ବ୍ରାହ୍ମଣଃ କ୍ଷତ୍ରିୟୋ ବୈଶ୍ୟଃ ଶୂଦ୍ରୋ ବାପ୍ୟୁପସର୍ପତି ।
ବ୍ରହ୍ମକୂର୍ଚ୍ଚୋପବାସେନ ଯଥାବର୍ଣ୍ଣସ୍ୟ ନିଷ୍କୃତିଃ ॥ ୨୫ ॥
ଶୂଦ୍ରାଣାଂ ନୋପବାସଃ ସ୍ୟାଚ୍ଛୂଦ୍ରୋ ଦାନେନ ଶୁଦ୍ଧ୍ୟତି ।
ବ୍ରହ୍ମକୂର୍ଚ୍ଚମହୋରାତ୍ରଂ ଶ୍ୱପାକମପି ଶୋଧୟେତ୍ ॥ ୨୬ ॥

---

ଗର୍ଭରେ ବ୍ରାହ୍ମଣଦ୍ୱାରା ଉତ୍ପନ୍ନ ହୁଏ, ଏବଂ ଯେବେ ବ୍ରାହ୍ମଣଦ୍ୱାରା ତାହାର ସଂସ୍କାର ନ ହୁଏ, ତାହା ହେଲେ ତାହାକୁ ନାପିତ ବୋଲାଯାଏ । ୨୧ ।

ଯେଉଁ ପୁତ୍ର ଶୂଦ୍ରକନ୍ୟାଗର୍ଭରେ କ୍ଷତ୍ରିୟଔରସରେ ଜନ୍ମ ପରିଗ୍ରହ କରେ ତାହାକୁ ସଦ୍ଗୋପ ବା ଗୋପାଳ ବୋଲାଯାଏ । ବ୍ରାହ୍ମଣ ତାହାର ଅନ୍ନଭୋଜନ କରିପାରେ, ସନ୍ଦେହ ନାହିଁ । ୨୨ ।

ଯେଉଁ ବ୍ୟକ୍ତି ବ୍ରାହ୍ମଣଙ୍କ ଔରସରେ ବୈଶ୍ୟକନ୍ୟାଗର୍ଭରେ ଜନ୍ମ ପରିଗ୍ରହ କରେ, ତାହାକୁ ଅର୍ଦ୍ଧିକ ବା ଅର୍ଦ୍ଧସୀରୀ ବୋଲାଯାଏ । ବ୍ରାହ୍ମଣମାନେ ଅର୍ଦ୍ଧିକର ଅନ୍ନ ଭୋଜନ କରିପାରନ୍ତି, ସନ୍ଦେହ ନାହିଁ । ୨୩ ।

ଯାହାର ଅନ୍ନ ବା ଜଳ ଗ୍ରହଣ କରାଯାଏ ନାହିଁ, କୌଣସି ବ୍ରାହ୍ମଣ ଯେବେ ଅନିଚ୍ଛାପୂର୍ବକ ତାହାର ଭାଣ୍ଡସ୍ଥିତ ଜଳ, ଦଧି, ଘୃତ ବା ଦୁଗ୍ଧ ପାନ କରନ୍ତି ତାହା ହେଲେ ତାହାଙ୍କୁ କିପ୍ରକାର ପ୍ରାୟଶ୍ଚିତ୍ତ କରିବାକୁ ହେବ ବୋଲୁଅଛନ୍ତି । ୨୪ ।

ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ବା ଶୂଦ୍ର ଯେବେ ଉକ୍ତ ପାତକ-ନିବନ୍ଧନ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଗ୍ରହଣ କରି ଆସନ୍ତି, ତାହା ହେଲେ ବର୍ଣ୍ଣାନୁସାରେ ଉପବାସପୂର୍ବକ ବ୍ରହ୍ମକୂର୍ଚ୍ଚ ଭକ୍ଷଣ କରିବାର ବିଧି ଦେବ । ସେଥିରେ ଏକା ସେମାନଙ୍କର ପାପ ମୋଚନ ହେବ । ୨୫ ।

ପରନ୍ତୁ ଶୂଦ୍ର ପକ୍ଷରେ ଉପବାସର ବିଧି ନାହିଁ । ଶୂଦ୍ରମାନେ ଦାନଦ୍ୱାରା

ଗୋମୂତ୍ରଂ ଗୋମୟଂ କ୍ଷୀରଂ ଦଧି ସର୍ପିଃ କୁଶୋଦକଂ ।
ନିର୍ଦ୍ଦିଷ୍ଟଂ ପଞ୍ଚଗବ୍ୟଂ ତୁ ପବିତ୍ରଂ ପାପନାଶନଂ ॥ ୨୭ ॥
ଗୋମୂତ୍ରଂ କୃଷ୍ଣବର୍ଣ୍ଣାୟାଃ ଶ୍ୱେତାୟା ଗୋମୟଂ ହରେତ୍ ।
ପୟଶ୍ଚ ତାମ୍ରବର୍ଣ୍ଣାୟା ରକ୍ତାୟା ଦଧି ଚେଷ୍ୟତେ ॥ ୨୮ ।
କପିଳାୟା ଘୃତଂ ଗ୍ରାହ୍ୟଂ ସର୍ବଂ କାପିଲମେବ ବା ।
ଗୋମୂତ୍ରସ୍ୟ ପଲଂ ଦଦ୍ୟାଦଧ୍ନିସ୍ତ୍ରିପଲମୁଚ୍ୟତେ ॥ ୨୯ ॥
ଆଜ୍ୟସ୍ୟୈକପଲଂ ଦଦ୍ୟାଦଙ୍ଗୁଷ୍ଠାର୍ଦ୍ଧଂ ତୁ ଗୋମୟଂ ।
କ୍ଷୀରଂ ସପ୍ତପଲଂ ଦଦ୍ୟାତ୍ତୁ ପଲମେକଂ କୁଶୋଦକଂ ॥ ୩୦ ॥
ଗାୟତ୍ର୍ୟା ଗୃହ୍ୟ ଗୋମୂତ୍ରଂ ଗନ୍ଧଦ୍ୱାରେତି ଗୋମୟଂ ।
ଆପ୍ୟାୟସ୍ୱେତି ଚ କ୍ଷୀରଂ ଦଧିକ୍ରାବ୍ଣେତି ବୈ ଦଧି ॥ ୩୧ ॥
ତେଜୋଽସି ଶୁକ୍ରମିତ୍ୟାଜ୍ୟଂ ଦେବସ୍ୟତ୍ୱା କୁଶୋଦକଂ ।
ପଞ୍ଚଗବ୍ୟମୃଚା ପୂତଂ ସ୍ଥାପୟେଦଗ୍ନିସନ୍ନିଧୌ ॥ ୩୨ ॥

---

ଶୁଦ୍ଧିଲାଭ କରିବେ । ଏକ ଦିବାରାତ୍ର ମାତ୍ର ବ୍ରହ୍ମକୂର୍ଚ୍ଚ ଆହାରପୂର୍ବକ ଉପବାସ କରିଥିଲେ ଶ୍ୱପାକସ୍ପୃଷ୍ଟା ଶୁଦ୍ଧିଲାଭ କରିପାରେ । ୨୬ ।

ଗୋମୂତ୍ର, ଗୋମୟ, ଦଧି, ଦୁଗ୍ଧ, ଘୃତ ଏହି ପଞ୍ଚଗବ୍ୟ ଏବଂ କୁଶୋଦକ (ଏହାକୁ ବ୍ରହ୍ମକୂର୍ଚ୍ଚ ବୋଲାଯାଏ) ଏହା ପରମପବିତ୍ର ଓ ପାପନାଶକ ।୨୭।

କୃଷ୍ଣବର୍ଣ୍ଣା ଗାଭୀର ଗୋମୂତ୍ର ଶ୍ୱେତବର୍ଣ୍ଣା ଗାଭୀର ଗୋମୟ ତାମ୍ରମୟୀ ଗାଭୀର ଦୁଗ୍ଧ ରକ୍ତବର୍ଣ୍ଣା ଗାଭୀର ଦଧି । ୨୮ ।

କପିଳବର୍ଣ୍ଣା ଗାଭୀର ଘୃତ ଗ୍ରହଣ କରିବ । ଯେବେ ପଞ୍ଚବର୍ଣ୍ଣର ଗାଭୀ ପ୍ରାପ୍ତ ନ ହୁଏ, ତାହା ହେଲେ ଏକମାତ୍ର କପିଳବର୍ଣ୍ଣା ଗାଭୀର ପଞ୍ଚଗବ୍ୟ ଗ୍ରହଣ କରିବ । ଗୋମୂତ୍ର ଏକପଲ, ଦଧି ତିନିପଲ । ୨୯ ।

ଘୃତ ଏକପଲ ଗୋମୟ ଅର୍ଦ୍ଧାଙ୍ଗୁଷ୍ଠପରିମିତ ଦୁଗ୍ଧ ସପ୍ତପଲ ଏବଂ କୁଶୋଦକ ଏକପଲ ପରିମିତ ହେବ । ୩୦ ।

ଗାୟତ୍ରୀପାଠପୂର୍ବକ ଗୋମୂତ୍ର ଗ୍ରହଣ କରିବ, ଗନ୍ଧଦ୍ୱାରା ଇତ୍ୟାଦି ମନ୍ତ୍ର ପାଠ କରି ଗୋମୟ ନେବ । ଆପ୍ୟାୟସ୍ୱ ଏହିମନ୍ତ୍ରଦ୍ୱାରା ଦୁଗ୍ଧ ଗ୍ରହଣ କରିବ, ଦଧିକ୍ରାବ୍ଣ ଏହି ମନ୍ତ୍ରଦ୍ୱାରା ଦଧି ନେବାକୁ ହେବ । ୩୧ ।

ତେଜୋଽସି ଶୁକ୍ରମସ୍ୟ ମୃତମସି ଏହି ମନ୍ତ୍ର ପାଠ କରି ଘୃତ ଗ୍ରହଣ କରିବ । ଦେବସ୍ୟତ୍ୱା ଏହି ମନ୍ତ୍ର ପଢ଼ି କୁଶୋଦକ ନେବ । ଋଗ୍ବେଦୋକ୍ତ ଋକ୍‌ମନ୍ତ୍ରଦ୍ୱାରା ପଞ୍ଚଗବ୍ୟ ଶୋଧନ କରି ଅଗ୍ନିସମୀପରେ ସ୍ଥାପନ କରିବ ।୩୨।

ଅପୋହିଷ୍ଠେତି ଚାଲୋଡ୍ୟ ମାନସ୍ତୋକେତି ମନ୍ତ୍ରୟେତ୍ ।
ସପ୍ତାବରାସ୍ତୁ ଯେ ଦର୍ଭା ଅଚ୍ଛିନ୍ନାଗ୍ରାଃ ଶୁକତ୍ୱିଷଃ ॥ ୩୩ ॥
ଏତୈରୁଦ୍ଧୃତ୍ୟ ହୋତବ୍ୟଂ ପଞ୍ଚଗବ୍ୟଂ ଯଥାବିଧି ।
ଇରାବତୀ ଇଦଂ ବିଷ୍ଣୁର୍ମାନସ୍ତୋକେ ଚ ଶଂବତୀ ॥ ୩୪ ॥
ଏତୈରୁଦ୍ଧୃତ୍ୟ ହୋତବ୍ୟଂ ହୁତଶେଷଂ ସ୍ୱୟଂ ପିବେତ୍ ।
ଆଲୋଡ୍ୟ ପ୍ରଣବେନୈବ ନିର୍ମଥ୍ୟ ପ୍ରଣବେନ ତୁ ॥ ୩୫ ॥
ଉଦ୍ଧୃତ୍ୟ ପ୍ରଣବେନୈବ ପିବେଚ୍ଚ ପ୍ରଣବେନ ତୁ ।
ଯତ୍ତ୍ୱଗସ୍ଥିଗତଂ ପାପଂ ଦେହେ ତିଷ୍ଠତି ଦେହିନାଂ ॥ ୩୬ ॥
ବ୍ରହ୍ମକୂର୍ଚ୍ଚୋ ଦହେତ୍ ସର୍ବଂ ଯଥୈବାଗ୍ନିରିବେନ୍ଧନଂ ॥ ୩୭ ॥
ପିବତଃ ପତିତଂ ତୋୟଂ ଭାଜନେ ମୁଖନିଃସୃତଂ ।
ଅପେୟଂ ତଦ୍ବିଜାନୀୟାଦ୍ଭୁକ୍ତ୍ୱା ଚାନ୍ଦ୍ରାୟଣଂ ଚରେତ୍ ॥ ୩୮ ॥

---

ଅପୋହିଷ୍ଠାମୟୋ ଭୁବ, ଏହି ମନ୍ତ୍ର ପାଠ କରି ସେହି ଛଅଦ୍ରବ୍ୟ ମିଶ୍ରଣପୂର୍ବକ ଆଲୋଡ଼ନ କରିବ । ପରେ ମାନସ୍ତୋକ ଏହି ମନ୍ତ୍ରଦ୍ୱାରା ଏହା ଅଭିମନ୍ତ୍ରିତ କରିବ । ଯେଉଁ ସକଳ କୁଶସ୍ତମ୍ଭରେ ସପ୍ତ ଅପେକ୍ଷାନ୍ୟୂନ ପତ୍ର ଥିବ ଯାହାର ଅଗ୍ରଭାଗ ଛିନ୍ନ ନୋହିଥିବ, ଯାହାର ବର୍ଣ୍ଣ ଶୁକପକ୍ଷି ନ୍ୟାୟ ।୩୩ ।

ସେହି କୁଶସ୍ତମ୍ଭଦ୍ୱାରା ତୋଳି ପଞ୍ଚଗବ୍ୟ ଗ୍ରହଣ କରି ହୁତାଶନରେ ଯଥାବିଧାନରେ ଆହୁତି ପ୍ରଦାନ କରିବ । ପରେ ଇରାବତୀ ଇଦଂ ବିଷ୍ଣୁଃ ମାନସ୍ତୋକେ ଚ ଶଂବତୀ । ୩୪ ।

ଏହିସକଳ ରୁକ୍ ହୋକ୍ତ ମନ୍ତ୍ରଦ୍ୱାରା ଉକ୍ତ ପଞ୍ଚଗବ୍ୟ ସମେତ କୁଶପତ୍ର ଗ୍ରହଣ କରି ହୋମ କରି ସ୍ୱୟଂ ହୁତଶେଷ ପାନ କରିବ । ପ୍ରଥମତଃ ପ୍ରଣବ ପାଠପୂର୍ବକ ଆଲୋଡ଼ନ କରି ସେହି ପ୍ରଣବ ଉଚ୍ଚାରଣ କରି ଏହା ମନ୍ଥନ କରିବ ॥

ଅନନ୍ତର ସେହି ପ୍ରଣବ ପାଠପୂର୍ବକ ଉତ୍ତୋଳନ କରି ପ୍ରଣବ ପାଠ କରି ପାନ କରିବ । ୩୬ ।

ଯେଉଁ ପାପ ପ୍ରାଣିମାନଙ୍କର ଚର୍ମ ଓ ଅସ୍ଥିଗତ ହୋଇଥାଏ, ଅଗ୍ନି ଯେପରି କାଷ୍ଠ ଦଗ୍ଧ କରେ, ସେହିପରି ବ୍ରହ୍ମକୂର୍ଚ୍ଚ ତତ୍‌ସମୁଦାୟ ଦଗ୍ଧ କରିପକାଏ ॥

ଯେବେ ଜଳାଦି ପାନ କରିବା ସମୟରେ ମୁଖନିଃସୃତ ଜଳ ପାତ୍ରରେ ପତିତ ହୁଏ, ତାହା ହେଲେ ଆଉ ପାନ କରିବ ନାହିଁ । ଯେବେ କେହି ତାହା ପାନ କରେ ତାହା ହେଲେ ତାହାକୁ ଚାନ୍ଦ୍ରାୟଣ କରିବାକୁ ହେବ । ୩୮ ।

କୂପେ ଚ ପତିତଂ ଦୃଷ୍ଟ୍ୱା ଶ୍ୱଶୃଗାଲୌ ଚ ମର୍କଟଂ ।
ଅସ୍ଥି ଚର୍ମାଦି ପତିତଂ ପୀତ୍ୱାମେଧ୍ୟା ଅପୋ ଦ୍ୱିଜଃ । ୩୯ ।
ନାରଂ ତୁ କୂପେ କାକଂ ଚ ବିଡ୍ବରାହଖରୋଷ୍ଟ୍ରକଂ ।
ଗାବୟଂ ସୌପ୍ରତୀକଂ ଚ ମାୟୂରଂ ଖାଡ୍ଗକଂ ତଥା । ୪୦ ।
ବୈୟାଘ୍ରମାର୍କ୍ଷଂ ସୈଂହଂ ବା କୂପେଷୁ ଯଦି ମଜ୍ଜତି ।
ତଡ଼ାଗସ୍ୟାଥ ଦୁଷ୍ଟସ୍ୟ ପୀତଂ ସ୍ୟାଦୁଦକଂ ଯଦି । ୪୧ ।
ପ୍ରାୟଶ୍ଚିତ୍ତଂ ଭବେତ୍ତୁ ପୁଂସଃ କ୍ରମେଣୈତେନ ସର୍ବଶଃ ।
ବିପ୍ରଃ ଶୁଦ୍ଧ୍ୟେତ୍ତ୍ରିରାତ୍ରେଣ କ୍ଷତ୍ରିୟସ୍ତୁ ଦିନଦ୍ୱୟାତ୍ତୁ । ୪୨ ।
ଏକାହେନ ତୁ ବୈଶ୍ୟସ୍ତୁ ଶୂଦ୍ରୋ ନକ୍ତେନ ଶୁଦ୍ଧ୍ୟତି । ୪୩ ।
ପରପାକନିବୃତ୍ତସ୍ୟ ପରପାକରତସ୍ୟ ଚ ।

---

ଯେବେ କୂପମଧ୍ୟରେ ଶୃଗାଳ ବା କୁକ୍କୁର ପତିତ ହୁଏ, ଅଥବା ଯେବେ ବାନରର ଅସ୍ଥି ବା ଚର୍ମ ପଡ଼େ, ତାହା ହେଲେ ସେହି ଜଳ ଅପବିତ୍ର ହୁଏ । ଯେବେ କୌଣସି ବ୍ରାହ୍ମଣ କ୍ଷତ୍ରିୟାଦି ସେହି ଜଳପାନ କରନ୍ତି, ତାହା ହେଲେ ବ୍ରାହ୍ମଣାଦି ବର୍ଣ୍ଣବିଶେଷ ଅନୁସାରେ ପଶ୍ଚାଦୁକ୍ତ ପ୍ରାୟଶ୍ଚିତ୍ତ କରିବାକୁ ହେବ । ୩୯ ।

ଯେବେ କୂପମଧ୍ୟରେ ମନୁଷ୍ୟ ଅସ୍ଥି, କାକର ଅସ୍ଥି, ବିଡ଼ାଲର ଅସ୍ଥି, ବରାହ ଅସ୍ଥି, ଗର୍ଦ୍ଦଭ ଅସ୍ଥି, ଉଷ୍ଟ୍ର ଅସ୍ଥି, ଗବୟ ଅସ୍ଥି, ହସ୍ତିର ଅସ୍ଥି, ମୟୂର ଅସ୍ଥି, ଗଣ୍ଡା ଅସ୍ଥି । ୪୦ ।

ବ୍ୟାଘ୍ର ଅସ୍ଥି, ଭଲ୍ଲୁକ ଅସ୍ଥି, ସିଂହ ଅସ୍ଥି, ଅଥବା ଯେବେ ତହିଁରେ କଙ୍କାଳ ନିମଗ୍ନ ହୁଏ, ତାହା ହେଲେ ସେହି କୂପଜଳ ଦୁଷ୍ଟ ହେବ । ଏହି ସକଳଦ୍ୱାରା ତଡ଼ାଗଜଳ ଦୋଷଯୁକ୍ତ ହୋଇଥାଏ । ୪୧ ।

ଯେବେ କେହି ସେହି କୂପ ବା ତଡ଼ାଗର ଜଳ ପାନ କରେ, ତାହା ହେଲେ କେଉଁଜାତିର କି ପ୍ରକାର ପ୍ରାୟଶ୍ଚିତ୍ତ କରିବାକୁ ହେବ, ତାହା ବୋଲୁଅଛୁଁ, ବ୍ରାହ୍ମଣ ତ୍ରିରାତ୍ର ଉପବାସ କରି କ୍ଷତ୍ରିୟ ଦୁଇଦିନ ଉପବାସୀ ରହି । ୪୨ ।

ବୈଶ୍ୟ ଏକଦିନ ଉପବାସୀ ରହି ଏବଂ ଶୂଦ୍ର ଏକରାତ୍ରି ଉପବାସ କରି ଶୁଦ୍ଧିଲାଭ କରିପାରିବେ । ୪୩ ।

ଯେବେ କୌଣସି ବ୍ରାହ୍ମଣ ପରପାକନିବୃତ୍ତବ୍ୟକ୍ତିର ଓ ପରପାକନିରତ ବ୍ୟକ୍ତିର ଅଥବା

ଅପଚସ୍ୟ ଚ କୃତ୍ୱାନ୍ନଂ ଦ୍ୱିଜଶ୍ଚାନ୍ଦ୍ରାୟଣଂ ଚରେତ୍ । ୪୪ ।
ଅପଚସ୍ୟ ଚ ଯଦ୍ଦାନେ ଦାତୁଶ୍ଚାସ୍ୟ କୁତଃ ଫଳଂ ।
ଦାତା ପ୍ରତିଗ୍ରହୀତା ଚ ଦ୍ୱୌ ତୌ ନରକଗାମିନୌ । ୪୫ ।
ଗୃହୀତ୍ୱାଗ୍ନିଂ ସମାରୋପ୍ୟ ପଞ୍ଚଯଜ୍ଞାନ୍ନିବର୍ତ୍ତୟେତ୍ ।
ପରପାକନିବୃତ୍ତୋଽସୌ ମୁନିଭିଃ ପରିକୀର୍ତ୍ତିତଃ । ୪୬ ।
ପଞ୍ଚଯଜ୍ଞଂ ସ୍ୱୟଂ କୃତ୍ୱା ପରାନ୍ନେନୋପଜୀବତି ।
ସତତଂ ପ୍ରାତରୁତ୍ଥାୟ ପରପାକରତୋ ହି ସଃ । ୪୭ ।
ଗୃହସ୍ଥଧର୍ମ୍ମେ ଯୋ ବିପ୍ରୋ ଦଦାତି ପରିବର୍ଜ୍ଜିତଃ ।
ଋଷିଭିର୍ଦ୍ଧର୍ମ୍ମତତ୍ତ୍ୱଜ୍ଞୈ ରପଚଃ ପରିକୀର୍ତ୍ତିତଃ । ୪୮ ।
ଯୁଗେ ଯୁଗେ ଚ ଯେ ଧର୍ମ୍ମା ସ୍ତେଷୁ ଧର୍ମ୍ମେଷୁ ଯେ ଦ୍ୱିଜାଃ ।
ତେଷାଂ ନିନ୍ଦା ନ କର୍ତ୍ତବ୍ୟା ଯୁଗରୂପାହି ବ୍ରାହ୍ମଣାଃ । ୪୯ ।

---

ଅପଚ ବ୍ୟକ୍ତିର ଅନ୍ନଭୋଜନ କଲେ ଦ୍ୱିଜ ତାହା ହେଲେ ତାହାଙ୍କୁ ଚାନ୍ଦ୍ରାୟଣ-ବ୍ରତ କରିବାକୁ ହେବ । ୪୪ ।

ଯେବେ କେହି ଅପଚ ବ୍ରାହ୍ମଣଙ୍କୁ ଦାନ କରେ, ତାହା ହେଲେ ଦାନକର୍ତ୍ତାର କୌଣସି ଫଳ ହୁଏ ନାହିଁ । ବିଶେଷତଃ ଦାତା ଓ ପ୍ରତିଗ୍ରହୀତା ଦୁହେଁଯାକ ନରକଗାମୀ ହୁଅନ୍ତି । ୪୫ ।

ଯେଉଁ ଗୃହସ୍ଥ ଅଗ୍ନି ଗ୍ରହଣପୂର୍ବକ ଅଗ୍ନି ସ୍ଥାପନକରି ପଞ୍ଚଯଜ୍ଞ ନ କରେ, ମୁନିଗଣ ତାହାକୁ ପରପାକନିବୃତ୍ତ ବୋଲି କହନ୍ତି । ୪୬ ।

ଯେଉଁ ଗୃହସ୍ଥ ନିତ୍ୟ ପ୍ରାତଃକାଳରେ ଉଠି ହୋଇ ସ୍ୱୟଂ ପଞ୍ଚଯଜ୍ଞର ଅନୁଷ୍ଠାନ କରି ପରାନ୍ନଦ୍ୱାରା ଜୀବିକାନିର୍ବାହ କରନ୍ତି, ତାହାର ନାମ ପରପାକରତ । ୪୭ ।

ଯେଉଁ ବ୍ରାହ୍ମଣ, କ୍ଷତ୍ରିୟ ବା ବୈଶ୍ୟ, ଗୃହସ୍ଥଧର୍ମ୍ମରୁ ପରିବର୍ଜିତହୋଇ ଦାନକରେ, ଅର୍ଥାତ୍ ଯେଉଁବ୍ୟକ୍ତି ପଞ୍ଚଯଜ୍ଞର ଅନୁଷ୍ଠାନ ନ କରେ ଧର୍ମ୍ମ-ତତ୍ତ୍ୱଜ୍ଞ ଋଷିଗଣ ତାହାକୁ ଅପଚ ବୋଲିଥାନ୍ତି । ୪୮ ।

ଯୁଗେ, ଯୁଗେ ଯେଉଁ ସକଳ ଧର୍ମ୍ମ ବ୍ୟବସ୍ଥାପିତ ହୁଏ, ଏବଂ ଯେଉଁ ସକଳ ବ୍ରାହ୍ମଣ ସେହି ସକଳ ଧର୍ମ୍ମର ଅନୁବର୍ତ୍ତୀ ହୁଅନ୍ତି, ସେମାନଙ୍କର ନିନ୍ଦା କରିବାର କର୍ତ୍ତବ୍ୟ ନୁହେଁ, କାରଣ ବ୍ରାହ୍ମଣମାନେ ଯୁଗସ୍ୱରୂପ ଓ ସେହି ଯୁଗର ଅଂଶରେ ଅବତୀର୍ଣ୍ଣ । ୪୯ ।

ହୁଙ୍କାରଂ ବ୍ରାହ୍ମଣସ୍ୟୋକ୍ତ୍ୱା ତ୍ୱଂକାରଂ ଚ ଗରୀୟସଃ ।
ସ୍ନାତ୍ୱା ତିଷ୍ଠନ୍ନହଃଶେଷମଭିବାଦ୍ୟ ପ୍ରସାଦୟେତ୍ ॥ ୫୦ ॥
ତାଡୟିତ୍ୱା ତୃଣେନାପି କଣ୍ଠେ ବା ବଦ୍ଧ୍ୱା ବାସସା ।
ବିବାଦେନାପି ନିର୍ଜିତ୍ୟ ପ୍ରଣିପତ୍ୟ ପ୍ରସାଦୟେତ୍ ॥ ୫୧ ॥
ଅବଗୂର୍ଯ୍ୟ ତ୍ୱହୋରାତ୍ରଂ ତ୍ରିରାତ୍ରଂ କ୍ଷିତିପାତନେ ।
ଅତିକୃଚ୍ଛ୍ରଂ ଚ ରୁଧିରେ କୃଚ୍ଛ୍ରମନ୍ତରଶୋଣିତେ ॥ ୫୨ ॥
ନବାନ୍ନ ମତିକୃଚ୍ଛ୍ରଂ ସ୍ୟାତ୍ ପାଣିପୂରାନ୍ନଭୋଜନଂ ।
ତ୍ରିରାତ୍ରମୁପବାସଃ ସ୍ୟାଦତିକୃଚ୍ଛ୍ରଃ ସ ଉଚ୍ୟତେ ॥ ୫୩ ॥

---

ଯେବେ କୌଣସିବ୍ୟକ୍ତି ବ୍ରାହ୍ମଣଙ୍କପ୍ରତି ହୁଙ୍କାର ପ୍ରୟୋଗ କରେ, ଅଥବା ଯେବେ କୌଣସିବ୍ୟକ୍ତି ବୟୋଜ୍ୟେଷ୍ଠ ବ୍ୟକ୍ତିପ୍ରତି ବା ଗୁଣ-ଜ୍ୟେଷ୍ଠ ବ୍ୟକ୍ତିପ୍ରତି, 'ତୁମ୍ଭେ' ଏହି ବାକ୍ୟ ପ୍ରୟୋଗ କରେ, ତାହା ହେଲେ ସ୍ନାନପର ସମସ୍ତ ଦିବସ ସେହି ବ୍ରାହ୍ମଣଙ୍କୁ ବା ସେହି ବୟୋଜ୍ୟେଷ୍ଠବ୍ୟକ୍ତିଙ୍କୁ ପ୍ରଣାମାଦିଦ୍ୱାରା ପ୍ରସନ୍ନ କରାଇବ । ଏଥିରେ ତାହାର ସେହି ପାପ କ୍ଷୟ ହେବ ॥ ୫୦ ॥

ଯେବେ କୌଣସିବ୍ୟକ୍ତି ବ୍ରାହ୍ମଣଙ୍କୁ ତୃଣଦ୍ୱାରା ପ୍ରହାର କରେ, ଯେବେ କେହି ବ୍ରାହ୍ମଣଙ୍କ ଗଳାରେ ବସ୍ତ୍ର ଦିଏ, ଅଥବା ଯେବେ କେହି ବିବାଦରେ ବ୍ରାହ୍ମଣଙ୍କୁ ପରାଜୟ କରେ, ତାହା ହେଲେ, ପ୍ରଣାମ କରି ସେହି ଅବମାନିତ ବ୍ରାହ୍ମଣଙ୍କୁ ପ୍ରସନ୍ନ କରାଇବାକୁ ହେବ ॥ ୫୧ ॥

ଯେବେ କେହି ବ୍ରାହ୍ମଣଙ୍କୁ ଯଷ୍ଟି, କିଲ ପ୍ରଭୃତି ଉଞ୍ଚାଏ, ତାହା ହେଲେ ତାହାକୁ ଏକ ଦିବାରାତ୍ର ଉପବାସ କରିବାକୁ ହେବ । ଯେବେ କେହି ବ୍ରାହ୍ମଣଙ୍କୁ ଧକ୍କା ମାରି ପକାଇ ଦିଏ, ତାହା ହେଲେ ତାହାକୁ ତତ୍ପାପ ମୋଚନ ନିମିତ୍ତ ତ୍ରିରାତ୍ରି ବ୍ରତ କରିବାକୁ ହେବ । ଯେବେ କେହି ବ୍ରାହ୍ମଣଙ୍କୁ ଏପ୍ରକାର ପ୍ରହାର କରେ ଯେ ପ୍ରହାର ସ୍ଥାନରେ ରକ୍ତ ଜମିଯାଏ ତାହା ହେଲେ ତାହାକୁ କୃଚ୍ଛ୍ରବ୍ରତ କରିବାକୁ ହେବ । ଯେବେ କେହି ପ୍ରହାରଦ୍ୱାରା ବ୍ରାହ୍ମଣଙ୍କର ରକ୍ତପାତ କରେ ତାହା ହେଲେ ତତ୍ପାପ କ୍ଷୟ-ନିମିତ୍ତ ତାହାର ଅତିକୃଚ୍ଛ୍ରବ୍ରତ କରିବାର କର୍ତ୍ତବ୍ୟ ॥ ୫୨ ॥

ଏକ୍‌ ମୁଷ୍ଟି ମାତ୍ର ଅନ୍ନଭୋଜନ କରି ନଅ ରାତ୍ରି ଯାପନ କରିବାକୁ ଅତି କୃଚ୍ଛ୍ର ବୋଲାଯାଏ । ତ୍ରିରାତ୍ରି ଉପବାସ କରିବାକୁ କୃଚ୍ଛ୍ରବ୍ରତ ବୋଲା-ଯାଏ ॥ ୫୩ ॥

ସର୍ବେଷାମେବ ପାପାନାଂ ସଙ୍କରେ ସମୁପସ୍ଥିତେ ।
ଶତସାହସ୍ରମଭ୍ୟସ୍ତା ଗାୟତ୍ରୀ ଶୋଧନଂ ପରଂ ॥ ୫୪ ॥
ଇତି ପାରାଶରେ ଧର୍ମଶାସ୍ତ୍ରେ ଏକାଦଶୋଽଧ୍ୟାୟଃ

---

ଦ୍ୱାଦଶୋଽଧ୍ୟାୟଃ ।

ଦୁଃସ୍ୱପ୍ନଂ ଯଦି ପଶ୍ୟେତ୍ ବାନ୍ତେ ବା କ୍ଷୁରକର୍ମଣି ।
ମୈଥୁନେ ପ୍ରେତଧୂମେ ଚ ସ୍ନାନମେବ ବିଧୀୟତେ ॥ ୧ ॥
ଅଜ୍ଞାନାତ୍ ପ୍ରାଶ୍ୟ ବିଣ୍ମୂତ୍ରଂ ସୁରାଂ ବା ପିବତେ ଯଦି ।
ପୁନଃ ସଂସ୍କାରମର୍ହନ୍ତି ତ୍ରୟୋ ବର୍ଣ୍ଣା ଦ୍ୱିଜାତୟଃ ॥ ୨ ॥
ଅଜିନଂ ମେଖଳା ଦଣ୍ଡୋ ଭୈକ୍ଷଚର୍ଯ୍ୟା ବ୍ରତାନି ଚ ।
ନିବର୍ତ୍ତନ୍ତେ ଦ୍ୱିଜାତୀନାଂ ପୁନଃ ସଂସ୍କାରକର୍ମଣି ॥ ୩ ॥
ସ୍ତ୍ରୀ ଶୂଦ୍ରସ୍ୟ ତୁ ଶୁଦ୍ଧ୍ୟର୍ଥଂ ପ୍ରାଜାପତ୍ୟଂ ବିଧୀୟତେ ।
ପଞ୍ଚଗବ୍ୟଂ ତତଃ କୃତ୍ୱା ସ୍ନାତ୍ୱା ପୀତ୍ୱା ବିଶୁଧ୍ୟତି ॥ ୪ ॥

---

ଯେବେ ଏକକାଳରେ ନାନାପାପର ସାଙ୍କର୍ଯ୍ୟ ଉପସ୍ଥିତ ହୁଏ, ସେ-ସ୍ଥଳରେ ନାନାପ୍ରକାର ପ୍ରାୟଶ୍ଚିତ୍ତ ନ କରି ଏକ ଲକ୍ଷ ଗାୟତ୍ରୀ ଜପ, କରି ଶୁଦ୍ଧିଲାଭ କରି ପାରିବ । ୫୪ ।

ପରାଶର-ସଂହିତା ଏକାଦଶ ଅଧ୍ୟାୟଃ ।

---

ଯେବେ କେହି ଦୁଃସ୍ୱପ୍ନ ଦର୍ଶନ କରେ, ଯେବେ କେହି ବମନ କରେ, ଯେବେ କେହି କ୍ଷୌର ହୁଏ, ଯେବେ କେହି ସ୍ତ୍ରୀ ସମ୍ଭୋଗ କରେ, ଯେବେ ତାହାର ଗାତ୍ରରେ ଚିତାଧୂମ ଲାଗେ ତାହା ହେଲେ ସେ ସ୍ନାନ କରିବ । ୧ ।

ଯେବେ ବ୍ରାହ୍ମଣ କ୍ଷତ୍ରିୟ ଅଥବା ବୈଶ୍ୟଜାତି ଅଜ୍ଞାନବଶତଃ ବିଷ୍ଠା, ମୂତ୍ର ବା ସୁରା ପାନ କରେ, ତାହା ହେଲେ ସେମାନଙ୍କର ପୁନର୍ବାର ସଂସ୍କାର କରିବାକୁ ହେବ । ୨ ।

ଦ୍ୱିଜାତିଗଣର ପୁନଃ ସଂସ୍କାର ସ୍ଥଳରେ ଅଜିନ, ମେଖଳା, ଦଣ୍ଡ, ଭିକ୍ଷାଚରଣ ଏବଂ ବ୍ରତ, ଏତନ୍ତୁ ସମୁଦାୟହିଁ ନିବୃତ୍ତ ହୁଏ । ୩ ।

ସ୍ତ୍ରୀଲୋକ ଏବଂ ଶୂଦ୍ରର ପାପ କ୍ଷୟନିମିତ୍ତ ପ୍ରଥମତଃ ପ୍ରାଜାପତ୍ୟବ୍ରତ ବିହିତ ହୋଇଅଛି । ପରେ ସ୍ନାନପୂର୍ବକ ପଞ୍ଚଗବ୍ୟ ପାନ କରି ଶୁଦ୍ଧିଲାଭ କରିପାରିବ । ୪ ।

ଜଳାଗ୍ନିପତନେ ଚୈବ ପ୍ରବ୍ରଜ୍ୟାନାଶକେଷୁ ଚ ।
ପ୍ରତ୍ୟବସିତମେତେଷାଂ କଥଂ ଶୁଦ୍ଧି ର୍ବିଧୀୟତେ ॥ ୫ ॥
ପ୍ରାଜାପତ୍ୟଦ୍ୱୟେନାପି ତୀର୍ଥାଭିଗମନେନ ଚ ।
ବୃଷୈକାଦଶଦାନେନ ବର୍ଣ୍ଣାଃ ଶୁଧ୍ୟନ୍ତି ତେ ତ୍ରୟଃ ॥ ୬ ॥
ବ୍ରାହ୍ମଣସ୍ୟ ପ୍ରବକ୍ଷ୍ୟାମି ବନଂ ଗତ୍ୱା ଚତୁଷ୍ପଥଂ ।
ସଶିଖଂ ବପନଂ କୃତ୍ୱା ପ୍ରାଜାପତ୍ୟଦ୍ୱୟଂ ଚରେତ୍ ॥ ୭ ॥
ଗୋଦ୍ୱୟଂ ଦକ୍ଷିଣାଂ ଦଦ୍ୟାଚ୍ଛୁଦ୍ଧିଃ ସ୍ୱାୟମ୍ଭୁବୋ ଽବ୍ରବୀତ୍ ।
ମୁଚ୍ୟତେ ତେନ ପାପେନ ବ୍ରାହ୍ମଣତ୍ୱଂ ଚ ଗଚ୍ଛତି ॥ ୮ ॥
ସ୍ନାନାନି ପଞ୍ଚପୁଣ୍ୟାନି କୀର୍ତ୍ତିତାନି ମନୀଷିଭିଃ ।
ଆଗ୍ନେୟଂ ବାରୁଣଂ ବ୍ରାହ୍ମଂ ବାୟବ୍ୟଂ ଦିବ୍ୟମେବ ଚ ॥ ୯ ॥
ଆଗ୍ନେୟଂ ଭସ୍ମନା ସ୍ନାନମବଗାହ୍ୟ ତୁ ବାରୁଣଂ ।
ଆପୋହିଷ୍ଠେତି ଚ ବ୍ରାହ୍ମଂ ବାୟବ୍ୟଂ ରଜସା ସ୍ମୃତଂ ॥ ୧୦ ॥

---

ଯେବେ ସ୍ନାନକାର୍ଯ୍ୟର ଓ ଅଗ୍ନି କାର୍ଯ୍ୟର ବାଧ ହୁଏ, ଯେବେ ପ୍ରବ୍ରଜ୍ୟା ନାଶ ହୁଏ, ତାହା ହେଲେ କିପ୍ରକାର ଶୁଦ୍ଧିଲାଭ କରିପାରିବ, ବୋଲୁଅଛୁଁ । ୫ ।

ଉକ୍ତସ୍ଥଳରେ ପ୍ରାଜାପତ୍ୟବ୍ରତଦ୍ୱୟଦ୍ୱାରା ତୀର୍ଥଗମନଦ୍ୱାରା ଏବଂ ଏକାଦଶ ବୃଷ ସଦକ୍ଷିଣଦାନଦ୍ୱାରା କ୍ଷତ୍ରିୟ ବୈଶ୍ୟ ଓ ଶୂଦ୍ର ଏହି ବର୍ଣ୍ଣତ୍ରୟ ଶୁଦ୍ଧିଲାଭ କରିପାରିବେ । ୬ ।

ବ୍ରାହ୍ମଣ ବନକୁ ଗମନ କରି କୌଣସି ଏକ ଚତୁଷ୍ପଥରେ ଶିଖାସମେତ ସମୁଦାୟ ମୁଣ୍ଡନ ହେବ । ପରେ ଦୁଇଗୋଟି ପ୍ରାଜାପତ୍ୟ ବ୍ରତକର ।୭।

ଏକ ବୃଷ ଓ ଏକ ଗାଭୀ ଦକ୍ଷିଣା ପ୍ରଦାନ କରିବ । ସ୍ୱାୟମ୍ଭୁବମନୁ ବୋଲିଅଛନ୍ତି ଯେ, ବ୍ରାହ୍ମଣ ଏହାଦ୍ୱାରା ଶୁଦ୍ଧିଲାଭ କରିପାରିବ । ଏହାଦ୍ୱାରା ବ୍ରାହ୍ମଣ ସେହି ପାପରୁ ମୁକ୍ତହୋଇ ବ୍ରାହ୍ମଣତ୍ୱ ଲାଭ କରିପାରିବ । ୮ ।

ପଣ୍ଡିତମାନେ ବୋଲିଛନ୍ତି ଯେ, ପଞ୍ଚପ୍ରକାର ସ୍ନାନଦ୍ୱାରା ଶରୀର ପବିତ୍ର ହୁଏ । ସେହି ପଞ୍ଚପ୍ରକାର ସ୍ନାନର ନାମ ଆଗ୍ନେୟସ୍ନାନ, ବାରୁଣସ୍ନାନ, ବ୍ରାହ୍ମସ୍ନାନ, ବାୟବ୍ୟସ୍ନାନ ଓ ଦିବ୍ୟସ୍ନାନ । ୯ ।

ଭସ୍ମଦ୍ୱାରା ମାର୍ଜ୍ଜନକୁ ଆଗ୍ନେୟସ୍ନାନ ବୋଲାଯାଏ । ଜଳରେ ଅବଗାହନପୂର୍ବକ ସ୍ନାନ କଲେ ତାହାକୁ ବାରୁଣ ସ୍ନାନ ବୋଲିଥାନ୍ତି । ଆପୋ-

ଯତ୍ର ସାତପବର୍ଗେଣ ସ୍ନାନଂ ତଦିବ୍ୟ ମୁଚ୍ୟତେ ।
ତତ୍ର ସ୍ନାନେ ତୁ ଗଙ୍ଗାୟାଂ ସ୍ନାତୋ ଭବତି ମାନବଃ । ୧୧ ।
ସ୍ନାନାର୍ଥଂ ବିପ୍ରମାୟାନ୍ତଂ ଦେବାଃ ପିତୃଗଣୈଃ ସହ ।
ବାୟୁଭୂତା ହି ଗଚ୍ଛନ୍ତି ତୃଷାର୍ତ୍ତାଃ ସଲିଲାର୍ଥିନଃ । ୧୨ ।
ନିରାଶା ସ୍ତେ ନିବର୍ତ୍ତନ୍ତେ ବସ୍ତ୍ରନିଷ୍ପୀଡନେ କୃତେ ।
ତସ୍ମା ନ୍ନ ପୀଡ଼ୟେଦ୍ବସ୍ତ୍ର ମକୃତ୍ୱା ପିତୃତର୍ପଣଂ । ୧୩ ।
ବଧୁନୋତି ହି ଯଃ କେଶାନ୍ ସ୍ନାତଃ ପ୍ରସ୍ରବତୋ ଦ୍ୱିଜଃ ।
ଆଚାମେଦା ଜଲସ୍ଥୋଽପି ସ ବାହ୍ୟଃ ପିତୃଦୈବତୈଃ । ୧୪ ।
ଶିରଃ ପ୍ରାବର୍ତ୍ତିକଂ ବଦ୍ଧ୍ୱା ମୁକ୍ତକଚ୍ଛଶିଖୋଽପିବା ।
ବିନା ଯଜ୍ଞୋପବୀତେନ ଆଚାନ୍ତୋ ଽପ୍ୟଶୁଚି ର୍ଭବେତ୍ । ୧୫ ।

---

ହସ୍ତା ଏହି ମନ୍ତ୍ରଦ୍ୱାରା ମାନସିକ ସ୍ନାନ କଲେ ତାହାକୁ ବ୍ରାହ୍ମସ୍ନାନ ବୋଲାଯାଏ ଧୂଳିଦ୍ୱାରା ମାର୍ଜ୍ଜନ କଲେ ତାହାକୁ ବାୟବ୍ୟସ୍ନାନ ବୋଲିଥାନ୍ତି । ୧୦ ।

ରୌଦ୍ରସମୟରେ ବୃଷ୍ଟିଜଳରେ ସ୍ନାନ କଲେ ତାହାକୁ ଦିବ୍ୟସ୍ନାନ ବୋଲାଯାଏ । ଏହି ଦିବ୍ୟସ୍ନାନଦ୍ୱାରା ମାନବଗଣ ଗଙ୍ଗାସ୍ନାନଫଳ ଲାଭ କରିପାରନ୍ତି । ୧୧ ।

ଯେଉଁ ସମୟରେ କୌଣସି ବ୍ରାହ୍ମଣ ସ୍ନାନ ନିମିତ୍ତ ଗମନ କରେ, ସେ ସମୟରେ ଦେବଗଣ ଓ ପିତୃଗଣ ବାୟୁରୂପୀ ହୋଇ ତୃଷାର୍ତ୍ତ ହୃଦୟରେ ଜଳନିମିତ୍ତ ତାହାର ପଶ୍ଚାତ୍ ପଶ୍ଚାତ୍ ଗମନ କରିଥାନ୍ତି । ୧୨ ।

ଅନନ୍ତର ଯେତେବେଳେ ବସ୍ତ୍ର ନିଷ୍ପୀଡ଼ନ କରିବାର ହୁଏ, ସେତେବେଳେ ସେହି ଦେବଗଣ ପିତୃଗଣ ନିରାଶ ହୋଇ ଫେରିଯାନ୍ତି । ଅତଏବ ପିତୃ ତର୍ପଣ ନ କରି ବସ୍ତ୍ର ନିଷ୍ପୀଡ଼ନ କରିବାର ବିଧେୟ ନୁହେ । ୧୩ ।

ଯେଉଁ ଦ୍ୱିଜ ସ୍ନାନ କରି ଜଳରେ ଦଣ୍ଡାୟମାନ ହୋଇ କେଶ ଝାଡନ୍ତି ଅଥବା ଜଳଉପରେ ଆଚମନ କରନ୍ତି, ଦେବଗଣ ପିତୃଗଣ ତାହାଙ୍କର ଦତ୍ତଜଳ ଗ୍ରହଣ କରନ୍ତି ନାହିଁ । ୧୪ ।

ମଥାରେ ପଗଡ଼ି ବାନ୍ଧିଥିଲେ, କଚ୍ଛା ଖୋଲିଥିଲେ, ଯଜ୍ଞୋପବୀତ ଛାଡ଼ି ଥିଲେ, ବା ମୁକ୍ତକେଶ ହୋଇଥିଲେ, ଆଚମନ କରି ଶୁଚି ହେବ ନାହିଁ । ୧୫ ।

ଜଲେ ସ୍ଥଲସ୍ଥୋ ନାଚାମେଜ୍ଜଲସ୍ଥଶ୍ଚ ବହିଃସ୍ଥଲେ ।
ଉଭେ ସ୍ପୃଷ୍ଟ୍ୱା ସମାଚାନ୍ତ ଉଭୟତ୍ର ଶୁଚିର୍ଭବେତ୍ ।୧୬।
ସ୍ନାତ୍ୱା ପୀତ୍ୱା କ୍ଷୁତେ ସୁପ୍ତେ ଭୁକ୍ତେ ରଥ୍ୟୋପସର୍ପଣେ ।
ଆଚାନ୍ତଃ ପୁନରାଚାମେ ବାସୋ ବିପରିଧାୟ ଚ ।୧୭।
କ୍ଷୁତେ ନିଷ୍ଠୀବନେ ଚୈବ ଦନ୍ତୋଚ୍ଛିଷ୍ଟେ ତଥାନୃତେ ।
ପତିତାନାଂ ଚ ସମ୍ଭାଷେ ଦକ୍ଷିଣଂ ଶ୍ରବଣଂ ସ୍ପୃଶେତ୍ ।୧୮।
ବ୍ରହ୍ମା ବିଷ୍ଣୁଶ୍ଚ ରୁଦ୍ରାଶ୍ଚ ସୋମଃ ସୂର୍ଯ୍ୟୋଽନଲସ୍ତଥା ।
ତେ ସର୍ବେଽପି ତିଷ୍ଠନ୍ତି କର୍ଣ୍ଣେ ବିପ୍ରସ୍ୟ ଦକ୍ଷିଣେ ।୧୯।
ଦିବାକରକରୈଃ ପୂତଂ ଦିବାସ୍ନାନଂ ପ୍ରଶସ୍ୟତେ ।
ଅପ୍ରଶସ୍ତଂ ନିଶୀସ୍ନାନଂ ରାହୋରନ୍ୟତ୍ର ଦର୍ଶନାତ୍ ।୨୦।
ମରୁତୋ ବସବୋ ରୁଦ୍ରା ଆଦିତ୍ୟାଶ୍ଚାଧିଦେବତାଃ ।
ସର୍ବେ ସୋମେ ପ୍ରଲୀୟନ୍ତେ ତସ୍ମାତ୍ ସ୍ନାନଂ ତୁ ତଦ୍‌ଗ୍ରହେ ।୨୧।

---

ସ୍ଥଳରେ ଦଣ୍ଡାୟମାନ ହୋଇ ଜଳରେ ଆଚମନ କରିବ ନାହିଁ, ଜଳରେ ଥାଇଁ ମଧ୍ୟ ସ୍ଥଳରେ ଆଚମନ କରିବ ନାହିଁ, ଜଳ ସ୍ଥଳ ଉଭୟ ସ୍ପର୍ଶପୂର୍ବକ ଉଭୟସ୍ଥଳରେ ଆଚମନ କଲେ ଶୁଚି ହୋଇ ପାରେ ।୧୬।

ସ୍ନାନ କରି, ପାନ କରି, କ୍ଷୁତ କରି, ଶୟନ କରି, ଭୋଜନ କରି, ପଥେ ଗମନ କରି, ଅଥବା ବସ୍ତ୍ର ପରିବର୍ତ୍ତନ କରି କୃତାଚମନବ୍ୟକ୍ତି ମଧ୍ୟ ପୁନର୍ବାର ଆଚମନ କରିବ ।୧୭।

କ୍ଷୁତ କଲେ ( ଛିଙ୍କିଲେ ) ନିଷ୍ଠୀବନ କଲେ ( ଶ୍ଳେଷ୍ମ ବା ଖଙ୍କାର ପକାଇଲେ ) ଦନ୍ତୋଚ୍ଛିଷ୍ଟ ହେଲେ ( ଦାନ୍ତ ଖୁଣ୍ଟିଲେ ) ମିଥ୍ୟାକଥା କହିଲେ କିମ୍ବା ପତିତବ୍ୟକ୍ତି ସଙ୍ଗେ ସମ୍ଭାଷଣ କଲେ ଦକ୍ଷିଣକର୍ଣ୍ଣ ସ୍ପର୍ଶ କରିବ ।୧୮।

ବ୍ରହ୍ମା, ବିଷ୍ଣୁ, ରୁଦ୍ର, ସୋମ, ସୂର୍ଯ୍ୟ, ଅନଲ ଏମାନେ ସମସ୍ତେ ବ୍ରାହ୍ମଣଙ୍କ ଦକ୍ଷିଣ କର୍ଣ୍ଣରେ ବାସ କରନ୍ତି ।୧୯।

ଦିବାଭାଗରେ ଯେତେବେଳେ ରୌଦ୍ର ଥିବ, ସେତେବେଳେ ସ୍ନାନ କରିବାର ପ୍ରଶସ୍ତ । ଯେଉଁ ସମୟରେ ରାହୁଦର୍ଶନ ହୁଏ, ସେହି ସମୟ ବ୍ୟତୀତ ଅନ୍ୟକାଳେ ନିଶାଭାଗେ ସ୍ନାନ କରିବାର ବିଧି ବିହିତ ନୁହେ ।୨୦।

ମରୁଦ୍‌ଗଣ, ବସୁଗଣ, ରୁଦ୍ରଗଣ, ଆଦିତ୍ୟଗଣ ଓ ଅନ୍ୟାନ୍ୟ ମୂଳ ଦେବଗଣ ସମସ୍ତେ ଚନ୍ଦ୍ରରେ ବିଲୀନ ଥାନ୍ତି । ଅତଏବ ଚନ୍ଦ୍ରଗ୍ରହଣସମୟରେ ନିଶାକାଳରେ ସ୍ନାନ କରିବାର ବିଧି ବିହିତ ହୋଇଅଛି ।୨୧।

ଖଲଯଜ୍ଞେ ବିବାହେ ଚ ସଂକ୍ରାନ୍ତୌ ଗ୍ରହଣେଷୁ ଚ ।
ଶର୍ବର୍ଯ୍ୟାଂ ଦାନମେତେଷୁ ନାନ୍ୟତ୍ରୈବ ବିଧୀୟତେ ॥ ୧୨ ॥
ପୁତ୍ରଜନ୍ମନି ଯଜ୍ଞେ ଚ ତଥା ଚାତ୍ୟୟକର୍ମଣି ।
ରାହୋଶ୍ଚ ଦର୍ଶନେ ଦାନଂ ପ୍ରଶସ୍ତଂ ନାନ୍ୟଥା ନିଶି ॥ ୧୩ ॥
ମହାନିଶା ତୁ ବିଜ୍ଞେୟା ମଧ୍ୟସ୍ଥପ୍ରହରଦ୍ୱୟଂ ।
ପ୍ରଦୋଷପଶ୍ଚିମୌ ଯାମୌ ଦିନବତ୍ ସ୍ନାନମାଚରେତ୍ ॥ ୧୪ ॥
ଚୈତ୍ୟବୃକ୍ଷଶ୍ଚିତିର୍ଯୂପଶ୍ଚ ଚଣ୍ଡାଲଃ ସୋମବିକ୍ରୟୀ ।
ଏତାଂସ୍ତୁ ବ୍ରାହ୍ମଣଃ ସ୍ପୃଷ୍ଟ୍ୱା ସବାସା ଜଲମାବିଶେତ୍ ॥ ୧୫ ॥
ଅସ୍ଥିସଞ୍ଚୟନାତ୍ ପୂର୍ବଂ ରୁଦିତ୍ୱା ସ୍ନାନମାଚରେତ୍ ।
ଅନ୍ତର୍ଦଶାହେ ବିପ୍ରସ୍ୟ ପୂର୍ବମାଚମନଂ ଭବେତ୍ ॥ ୧୬ ॥
ସର୍ବଂ ଗଙ୍ଗାସମଂ ତୋୟଂ ରାହୁଗ୍ରସ୍ତେ ଦିବାକରେ ।
ସୋମଗ୍ରହେ ତଥୈବୋକ୍ତଂ ସ୍ନାନଦାନାଦିକର୍ମସୁ ॥ ୧୭ ॥

---

ଖଲଯଜ୍ଞ, ବିବାହ, ସଂକ୍ରାନ୍ତି ଓ ଗ୍ରହଣ ଏହି କେତେକ ସମୟରେ ରାତ୍ରିକାଳରେ ଦାନ କରିବାର ପ୍ରଶସ୍ତ । ଅନ୍ୟସମୟରେ ଦାନ କରିବାର ପ୍ରଶସ୍ତ ନୁହେ । ୧୨ ।

ପୁତ୍ର ଉତ୍ପନ୍ନ ହେଲେ ଯଜ୍ଞ ପ୍ରବୃତ୍ତ ହେଲେ ସ୍ୱସ୍ତ୍ୟୟନ କରିବାକୁ ହେଲେ ରାହୁଦର୍ଶନ ହେଲେ ରାତ୍ରିକାଳରେ ଦାନ କରିବାର ପ୍ରଶସ୍ତ, ଅନ୍ୟ-ସମୟରେ ପ୍ରଶସ୍ତ ନୁହେ । ୧୩ ।

ରାତ୍ରି ଦ୍ୱିତୀୟ ଓ ତୃତୀୟପ୍ରହରକୁ ମହାନିଶା ବୋଲାଯାଏ । ପ୍ରଥମ ଓ ଶେଷ ପ୍ରହର ଦିବସନ୍ୟାୟ ଅତଏବ ତହିଁରେ ସ୍ନାନ କରିବ । ୧୪ ।

ଚିତାସ୍ଥିତ ଚୈତ୍ୟବୃକ୍ଷ ଚଣ୍ଡାଲ ଓ ସୋମବିକ୍ରୟକାରୀକୁ ସ୍ପର୍ଶକଲେ ବ୍ରାହ୍ମଣ ସେହି ବସ୍ତ୍ରରେ ସ୍ନାନ କରିବ । ୧୫ ।

ଅସ୍ଥିସଞ୍ଚୟନ ପୂର୍ବରେ ଯେତେବେଳେ ରୋଦନ କରିବ, ସେତେ-ବେଳେ ସ୍ନାନ କରିବାକୁ ହେବ । ବ୍ରାହ୍ମଣଗଣ ଦଶାହମଧ୍ୟରେ ରୋଦନ କଲେ ପ୍ରଥମତଃ ଆଚମନ କରି ପଶ୍ଚାତ୍ ସ୍ନାନ କରିବେ । ୧୬ ।

ଦିବାକର ରାହୁଗ୍ରସ୍ତ ହେଲେ ସମ୍ପ୍ରଦାୟ ଜଳ ଗଙ୍ଗାଜଳସଦୃଶ ହୁଏ, ଚନ୍ଦ୍ରଗ୍ରହଣରେ ମଧ୍ୟ ସେହିରୂପ ହୋଇଥାଏ । ଅତଏବ ସେହି ସମୟରେ ସ୍ନାନ ଦାନପ୍ରଭୃତି ସକଳ କର୍ମହିଁ ପ୍ରଶସ୍ତ । ୧୭ ।

କୁଶପୂତଂ ତୁ ଯତ୍ ସ୍ନାନଂ କୁଶେନୋପସ୍ପୃଶେଦ୍ଦ୍ୱିଜଃ ।
କୁଶେନୋଦ୍ଧୃତତୋୟଂ ଯତ୍ ସୋମପାନସମଂ ସ୍ମୃତଂ ॥ ୨୮ ॥
ଅଗ୍ନିକାର୍ଯ୍ୟାତ୍ ପରିଭ୍ରଷ୍ଟାଃ ସନ୍ଧ୍ୟୋପାସନବର୍ଜ୍ଜିତାଃ ।
ବେଦଂ ଚୈବାନଧୀୟାନାଃ ସର୍ବ୍ବେ ତେ ବୃଷଳାଃ ସ୍ମୃତାଃ ॥ ୨୯ ॥
ତସ୍ମାଦ୍ ବୃଷଳଭୀତେନ ବ୍ରାହ୍ମଣେନ ବିଶେଷତଃ ।
ଅଧ୍ୟେତବ୍ୟୋଽପ୍ୟେକଦେଶୋ ଯଦି ସର୍ବ୍ବଂ ନ ଶକ୍ୟତେ ॥ ୩୦ ॥
ଶୂଦ୍ରାନ୍ନରସପୁଷ୍ଟସ୍ୟାପ୍ୟଧୀୟାନସ୍ୟ ନିତ୍ୟଶଃ ।
ଜପତୋ ଜୁହ୍ୱତୋ ବାପି ଗତିରୂର୍ଦ୍ଧ୍ୱା ନ ବିଦ୍ୟତେ ॥ ୩୧ ॥
ଶୂଦ୍ରାନ୍ନଂ ଶୂଦ୍ରସମ୍ପର୍କଃ ଶୂଦ୍ରେଣ ତୁ ସହାସନଂ ।
ଶୂଦ୍ରାଜ୍ଜ୍ଞାନାଗମଶ୍ଚାପି ଜ୍ୱଳନ୍ତମପି ପାତୟେତ୍ ॥ ୩୨ ॥
ମୃତ ସୂତକ ପୁଷ୍ଟାଙ୍ଗୋ ଦ୍ୱିଜଃ ଶୂଦ୍ରାନ୍ନଭୋଜନେ ।
ଅହଂ ତଂ ନ ବିଜାନାମି କାଂ କାଂ ଯୋନିଂ ଗମିଷ୍ୟତି ॥ ୩୩ ॥

---

କୁଶପୂତଜଳରେ ସ୍ନାନ କରି କୁଶଜଳରେ ଆଚମନପୂର୍ବ୍ବକ କୁଶୋଦ୍ଧୃତ ଜଳ ପାନ କଲେ ସୋମପାନସଦୃଶ ଫଳ ହୁଏ । ୨୮ ।

ଯେଉଁ ସକଳ ବ୍ରାହ୍ମଣ ଅଗ୍ନିକାର୍ଯ୍ୟରୁ ପରିଭ୍ରଷ୍ଟ ହୋଇ ଥାନ୍ତି । ଯେଉଁ ସକଳ ବ୍ରାହ୍ମଣ ସନ୍ଧ୍ୟାବନ୍ଦନ କରନ୍ତି ନାହିଁ । ଯେଉଁ ସକଳ ବ୍ରାହ୍ମଣ ବେଦପାଠରେ ବିରତ ସେମାନଙ୍କୁ ବୃଷଳ ବୋଲାଯାଏ । ୨୯ ।

ଅତଏବ ବୃଷଳ ହେବାର ଆଶଙ୍କାରେ ବ୍ରାହ୍ମଣଙ୍କର କର୍ତ୍ତବ୍ୟ ଏହି ଯେ ଯେବେ ସମସ୍ତ ବେଦ ଅଧ୍ୟୟନ କରିବାକୁ ସମର୍ଥ ନ ହୁଅନ୍ତି, ତାହା ହେଲେ ଏକାଂଶ ମାତ୍ର ଅଧ୍ୟୟନ କରିବ । ୩୦ ।

ଯେଉଁ ବ୍ୟକ୍ତି ଶୂଦ୍ରାନ୍ନଦ୍ୱାରା ପ୍ରତିପାଳିତ ହୋଇ ନିତ୍ୟ ବେଦ ଅଧ୍ୟୟନ, ଜପ ଓ ହୋମ କରେ ତାହାର ଶାସ୍ତ୍ରୋକ୍ତ ସଦ୍ଗତି ଲାଭ ହୁଏ ନାହିଁ ।୩୧।

ଶୂଦ୍ରାନ୍ନ, ଶୂଦ୍ରସମ୍ପର୍କ, ଶୂଦ୍ରସହିତ ସହବାସ, ଶୂଦ୍ରଠାରୁ ଜ୍ଞାନ ଲାଭ ଏହିତ ସମୁଦାୟ ଜ୍ଞାନାଗ୍ନିଦ୍ୱାରା ପ୍ରଜ୍ୱଳିତ ବ୍ୟକ୍ତିଙ୍କୁ ଅଧଃପତିତ କରେ ।୩୨

ଯେଉଁ ବ୍ରାହ୍ମଣଙ୍କ ଶରୀର ଶୂଦ୍ର-ମରଣାଶୌଚର ଓ ଜନନାଶୌଚର ଅନ୍ନଦ୍ୱାରା ପରିପୁଷ୍ଟ ହୋଇଥିବ, ତାହାଙ୍କୁ କେଉଁ୨ ଯୋନିରେ ଜନ୍ମ ପରିଗ୍ରହ କରିବାକୁ ହେବ, ତାହା ସକଳ ନିଃଶେଷରୂପରେ ବୋଲି ଯାଇ ନ ପାରେ । ୩୩ ।

ଗୃଧ୍ରୋ ଦ୍ୱାଦଶଜନ୍ମାନି ଦଶଜନ୍ମାନି ଶୂକରଃ ।
ଶ୍ୱଯୋନୌ ସପ୍ତଜନ୍ମ ସ୍ୟାଦତ୍ୟେବଂ ମନୁରବ୍ରବୀତ୍ ॥ ୩୪ ॥
ଦକ୍ଷିଣାର୍ଥଂ ତୁ ଯୋ ବିପ୍ରଃ ଶୂଦ୍ରସ୍ୟ ଜୁହୁୟାଦ୍ଧବିଃ ।
ବ୍ରାହ୍ମଣସ୍ତୁ ଭବେଚ୍ଛୂଦ୍ରଃ ଶୂଦ୍ରସ୍ତୁ ବ୍ରାହ୍ମଣୋ ଭବେତ୍ ॥ ୩୫ ॥
ମୌନବ୍ରତଂ ସମାଶ୍ରିତ୍ୟ ଆସୀନୋ ନ ବଦେଦ୍ଦ୍ୱିଜଃ ।
ଭୁଞ୍ଜାନୋ ହି ବଦେଦ୍ୟସ୍ତୁ ତଦନ୍ନଂ ପରିବର୍ଜୟେତ୍ ॥ ୩୬ ॥
ଅର୍ଦ୍ଧେ ଭୁକ୍ତେ ତୁ ଯୋ ବିପ୍ରସ୍ତସ୍ମିନ୍ ପାତ୍ରେ ଜଳଂ ପିବେତ୍ ।
ହତଂ ଦୈବଂ ଚ ପିତ୍ର୍ୟଂ ଚ ଆତ୍ମାନଂ ଚୋପଘାତୟେତ୍ ॥ ୩୭ ॥
ଭାଜନେଷୁ ଚ ତିଷ୍ଠତ୍ସୁ ସ୍ୱସ୍ତି କୁର୍ବନ୍ତି ଯେ ଦ୍ୱିଜାଃ ।
ନ ଦେବାସ୍ତୃପ୍ତିମାୟାନ୍ତି ନିରାଶାଃ ପିତରସ୍ତଥା ॥ ୩୮ ॥
ଗୃହସ୍ଥସ୍ତୁ ଯଦା ଯୁକ୍ତୋ ଧର୍ମମେବାନୁଚିନ୍ତୟେତ୍ ।
ପୋଷ୍ୟବର୍ଗାର୍ଥସିଦ୍ଧ୍ୟର୍ଥଂ ନ୍ୟାୟବର୍ତ୍ତୀ ସୁବୁଦ୍ଧିମାନ୍ ॥ ୩୯ ।

---

ସେହିବ୍ୟକ୍ତି ଦ୍ୱାଦଶଜନ୍ମ ଗୃଧ୍ର, ଦଶଜନ୍ମ ଶୂକର, ସପ୍ତଜନ୍ମ କୁକ୍କୁର ହୁଏ, ଏହା ମନୁ ବୋଲନ୍ତି ॥ ୩ ॥

ଯେବେ କୌଣସି ବ୍ରାହ୍ମଣ ଦକ୍ଷିଣା ଗ୍ରହଣ କରି ଶୂଦ୍ର ନିମିତ୍ତ ହୋମ କରନ୍ତି, ତାହା ହେଲେ ସେହି ବ୍ରାହ୍ମଣ ଶୂଦ୍ର ସଦୃଶ ଓ ସେହି ଶୂଦ୍ର ବ୍ରାହ୍ମଣ ସଦୃଶ ହୁଏ ॥ ୩୫ ॥

ଯେଉଁ ବ୍ରାହ୍ମଣ ମୌନବ୍ରତ ଅବଲମ୍ବନ କରିବ, ସେ ଯେଉଁ କୌଣସି ସମୟରେ ଉପବିଷ୍ଟ ହୋଇ କୌଣସି କଥା କହିବ ନାହିଁ । ଯେ ଭୋଜନ କରୁ କରୁ କଥା କହିବ ସେ ଭୋଜନରେ ବିରତ ହୋଇ ସେହି ଅନ୍ନ ପରିତ୍ୟାଗ କରିବ ॥ ୩୬ ॥

ଅର୍ଦ୍ଧଭୋଜନ କରି ଯେଉଁ ବିପ୍ର ସେହି ପାତ୍ରରେ ଜଳପାନ କରିବ, ତାହାର ଦୈବକର୍ମ ଓ ପିତୃକର୍ମ ସକଳ ନଷ୍ଟ ହେବ, ଏବଂ ସେ ଆତ୍ମାକୁ ଅଧଃପାତିତ କରିବ ॥ ୩୭ ॥

ତର୍ପଣର ପାତ୍ର ଉପସ୍ଥିତ ଥାଇଁ ଯେ ସକଳ ବ୍ରାହ୍ମଣ ତର୍ପଣ ନ କରନ୍ତି, ସେମାନଙ୍କର ପିତୃଗଣ ଦେବଗଣ ତୃପ୍ତ ହୁଅନ୍ତି ନାହିଁ । ପ୍ରତ୍ୟୁତ ନିରାଶ ହୋଇ ଫେରିଯାନ୍ତି ॥ ୩୮ ॥

ନ୍ୟାୟମାର୍ଗାନୁସାରୀ ସୁବୁଦ୍ଧି ଗୃହସ୍ଥ ଯେଉଁ ସମୟରେ ପୁତ୍ର କଳତ୍ରାଦି

ନ୍ୟାଯ୍ୟୋପାର୍ଜ୍ଜିତବିତ୍ତେନ କର୍ତ୍ତବ୍ୟଂ ଜ୍ଞାନରକ୍ଷଣଂ ।
ଅନ୍ୟାଯ୍ୟେନ ତୁ ଯୋ ଜୀବେତ୍ ସର୍ବକର୍ମ୍ମବହିଷ୍କୃତଃ ॥ ୪୦ ॥
ଅଗ୍ନିଚିତ୍ କପିଲା ସତ୍ରୀ ରାଜା ଭିକ୍ଷୁର୍ମହୋଦଧିଃ ।
ଦୃଷ୍ଟମାତ୍ରଂ ପୁନନ୍ତ୍ୟେତେ ତସ୍ମାତ୍ପଶ୍ୟେତ୍ ନିତ୍ୟଶଃ ॥ ୪୧ ॥
ଅରଣିଂ କୃଷ୍ଣମାର୍ଜ୍ଜାରଂ ଚନ୍ଦନଂ ସୁମଣିଂ ଘୃତଂ ।
ତିଲାନ୍ କୃଷ୍ଣାଜିନଂ ଛାଗଂ ଗୃହେ ଚୈତାନ ରକ୍ଷୟେତ୍ ॥ ୪୨ ॥
ଗବାଂ ଶତଂ ସୈକବୃଷଂ ଯତ୍ର ତିଷ୍ଠତ୍ୟଯନ୍ତ୍ରିତଂ ।
ତତ୍ କ୍ଷେତ୍ରଂ ଦଶଗୁଣିତଂ ଗୋଚର୍ମ୍ମ ପରିକୀର୍ତ୍ତିତଂ ॥ ୪୩ ॥
ବ୍ରହ୍ମହତ୍ୟାଦିଭିର୍ମର୍ତ୍ତ୍ୟୋ ମନୋବାକ୍କାୟକର୍ମ୍ମଜୈଃ ।
ଏତଦ୍‌ଗୋଚର୍ମ୍ମ ଦାନେନ ମୁଚ୍ୟତେ ସର୍ବକିଲ୍ବିଷୈଃ ॥ ୪୪ ॥
କୁଟୁମ୍ବିନେ ଦରିଦ୍ରାୟ ଶ୍ରୋତ୍ରିୟାୟ ବିଶେଷତଃ ।
ଯଦ୍ଦାନଂ ଦୀୟତେ ତସ୍ମୈ ତଦାୟୁର୍ବୃଦ୍ଧିକାରକଂ ॥ ୪୫ ॥

---

ପରିଜନ ପ୍ରତିପାଳନ ରୂପ ଧର୍ମ୍ମାର୍ଥ ସାଧନରେ ନିଯୁକ୍ତ ଥିବ, ସେତେବେଳେ ସର୍ବଦା ଧର୍ମ୍ମଚିନ୍ତାହିଁ କରିବ । ୩୯ ।

ନ୍ୟାଯ୍ୟପଥ ଅବଲମ୍ବନପୂର୍ବକ ଉପାର୍ଜ୍ଜିତଧନଦ୍ୱାରା ଜ୍ଞାନ ରକ୍ଷା କରିବ । ଯେ ବ୍ୟକ୍ତି ଅନ୍ୟାଯ୍ୟପଥ ଅବଲମ୍ବନ କରି ଜୀବିକା ନିର୍ବାହ କରିବ ସେ ସକଳ ଧର୍ମ୍ମରୁ ବିଚ୍ୟୁତ ହେବ । ୪୦ ।

ଅଗ୍ନିଚିତ୍ ବ୍ରାହ୍ମଣ, କପିଳାଗାଈ, ଯଜ୍ଞେ ଦୀକ୍ଷିତ ବ୍ୟକ୍ତି, ରାଜା, ଭିକ୍ଷୁକ ଓ ଜଳନିଧି ଏମାନେ ଦର୍ଶନ ମାତ୍ରରେ ପବିତ୍ର କରନ୍ତି, ଅତଏବ ନିତ୍ୟ ଏମାନଙ୍କର ଦର୍ଶନ କରିବାର କର୍ତ୍ତବ୍ୟ । ୪୧ ।

ଅରଣି କୃଷ୍ଣମାର୍ଜ୍ଜାର, ଚନ୍ଦନ, ଉତ୍ତମମଣି, ଘୃତ, ତିଲ, କୃଷ୍ଣାଜିନ ଓ ଛାଗ ଏହି ସମୁଦାୟ ଗୃହରେ ରକ୍ଷା କରିବ ॥ ୪୨ ।

ଯେଉଁ କ୍ଷେତ୍ରରେ ଏକ ବୃଷ ଓ ଏକଶତ ଗାଈ ମୁକ୍ତ ଥାଇ ରହିପାରନ୍ତି; ତାହାର ଦଶଗୁଣ କ୍ଷେତ୍ରକୁ ଗୋଚର୍ମ୍ମ ବୋଲିଯାଏ । ୪୩ ।

କୌଣସି ମନୁଷ୍ୟ ଯେବେ ମନୋଦ୍ୱାରା, ବାକ୍ୟଦ୍ୱାରା, ଶାରୀରକ-ବ୍ୟାପାରଦ୍ୱାରା ବ୍ରହ୍ମହତ୍ୟା ପ୍ରଭୃତି ମହାପାତକ କରେ, ତାହା ହେଲେ ଏହି ପ୍ରକାରରେ ଗୋଚର୍ମ୍ମ ଦାନ କଲେ, ସମୁଦାୟ ପାପରୁ ବିନିର୍ମୁକ୍ତ ହୋଇପାରିବ । ୪୪ ।

ବହୁପରିବାରବିଶିଷ୍ଟ ଦରିଦ୍ର ବ୍ରାହ୍ମଣଙ୍କୁ ବିଶେଷତଃ ଏହିରୂପ ଶ୍ରୋତ୍ରିୟଙ୍କୁ ଯାହା ଦାନ କରାଯାଏ, ତହିଁରେ ପରମାୟୁ ବୃଦ୍ଧି ହୁଏ । ୪୫ ।

ଅଷୋଡ଼ଶଦିନାଦର୍ବାକ୍ ସ୍ନାନମେବ ରଜସ୍ୱଳା ।
ଅତ ଊର୍ଦ୍ଧ୍ୱଂ ତ୍ରିରାତ୍ରଂ ସ୍ୟାଦୁଶନା ମୁନିରବ୍ରବୀତ୍ । ୪୬ ।
ଯୁଗଂ ଯୁଗଦ୍ୱୟଂ ଚୈବ ତ୍ରିଯୁଗଂ ଚ ଚତୁର୍ଯୁଗଂ ।
ଚଣ୍ଡାଲସୂତିକୋଦକ୍ୟା ପତିତାନାମଧଃ କ୍ରମାତ୍ । ୪୭ ।
ତତଃ ସନ୍ନିଧିମାତ୍ରେଣ ସଚେଲଂ ସ୍ନାନମାଚରେତ୍ ।
ସ୍ନାତ୍ୱାବଲୋକୟେତ୍ ସୂର୍ଯ୍ୟମଜ୍ଞାନାତ୍ ସ୍ପୃଶତେ ଯଦି । ୪୮ ।
ବାପୀକୂପତଡ଼ାଗେଷୁ ବ୍ରାହ୍ମଣୋ ଜ୍ଞାନଦୁର୍ବଳଃ ।
ତୋୟଂ ପିବତି ବକ୍ତ୍ରେଣ ଶ୍ୱଯୋନୌ ଜାୟତେ ଧ୍ରୁବଂ । ୪୯ ।
ଯସ୍ତୁ କ୍ରୁଦ୍ଧଃ ପୁମାନ୍ ଭାର୍ଯ୍ୟାଂ ପ୍ରତିଜ୍ଞାୟାପ୍ୟଗମ୍ୟତାଂ ।
ପୁନରିଚ୍ଛତି ତାଂ ଗନ୍ତୁଂ ବିପ୍ରମଧ୍ୟେତୁ ଶ୍ରାବୟେତ୍ । ୫୦ ।

---

ଯେବେ କୌଣସି ନାରୀ ଷୋଳ ଦିନ ମଧ୍ୟରେ ପୁନର୍ବାର ରଜସ୍ୱଳା ହୁଏ, ତାହା ହେଲେ ସ୍ନାନ କରି ଶୁଦ୍ଧିଲାଭ କରିବ । ଯେବେ ଷୋଳ ଦିନ ପରେ ରଜସ୍ୱଳା ହୁଏ, ତାହା ହେଲେ ତ୍ରିରାତ୍ର ଅଶୌଚୀ ହେବ । ଏହା ମହର୍ଷି ଉଶନା ମଧ୍ୟ ସ୍ୱୀକାର କରିଅଛନ୍ତି । ୪୬ ।

ଯେବେ କେହି ଚଣ୍ଡାଳୀ ସ୍ପର୍ଶ କରେ ତାହା ହେଲେ ଦୁଇଦିନ, ଯେବେ କେହି ପ୍ରସୂତିକା ସ୍ପର୍ଶ କରେ ତାହା ହେଲେ ଚାରିଦିନ, ଯେବେ କେହି ରଜସ୍ୱଳାନାରୀ ସ୍ପର୍ଶ କରେ, ତାହା ହେଲେ ଛଅଦିନ, ଯେବେ କେହି ପତିତାନାରୀ ସ୍ପର୍ଶ କରେ, ତାହା ହେଲେ ଆଠଦିନ ଅଶୌଚ ହେବ । ୪୭ ।

ଅତଏବ ଏହି ସକଳନାରୀ ସମ୍ମୁଖବର୍ତ୍ତିନୀ ହେଲେ ତତ୍‌କ୍ଷଣାତ୍ ସେହିବସ୍ତ୍ରରେ ସ୍ନାନାର୍ଥ ଜଳରେ ପ୍ରବେଶ କରିବ । ଯେବେ କେହି ଅଜ୍ଞାନବଶତଃ ଏମାନଙ୍କୁ ସ୍ପର୍ଶ କରେ, ତାହା ହେଲେ ସ୍ନାନପରେ ସୂର୍ଯ୍ୟଦର୍ଶନ କରିବ । ୪୮ ।

ଯେବେ ଅଜ୍ଞକୌଣସି ବ୍ରାହ୍ମଣ ବାପୀ, କୂପ, ତଡ଼ାଗମଧ୍ୟରେ ମୁଖଦ୍ୱାରା (ମୁହଁଲଗାଇ) ଜଳପାନ କରନ୍ତି, ତାହା ହେଲେ ସେ ଜନ୍ମାନ୍ତରେ କୁକ୍କୁର ହୁଅନ୍ତି, ସନ୍ଦେହ ନାହିଁ । ୪୯ ।

ଯେବେ କୌଣସି ପୁରୁଷ କ୍ରୋଧବଶତଃ ଏହିରୂପ ପ୍ରତିଜ୍ଞା କରେ ଯେ, ସେ ଆଉ କେବେହେଲେ ତାହାର ସେହି ଭାର୍ଯ୍ୟାଗମନ କରିବ ନାହିଁ, ପରେ ପୁନର୍ବାର ଯେବେ ସେହି ଭାର୍ଯ୍ୟାଠାକୁ ଗମନ କରିବାକୁ

ଶ୍ରାନ୍ତଃ କ୍ରୁଦ୍ଧସ୍ତମୋ ଭ୍ରାନ୍ତ୍ୟା କ୍ଷୁତ୍ପିପାସା ଭୟାର୍ଦ୍ଦିତଃ ।
ଦାନଂ ପୁଣ୍ୟମକୃତ୍ୱା ଚ ପ୍ରାୟଶ୍ଚିତ୍ତଂ ଦିନତ୍ରୟଂ । ୫୧ ।
ଉପାସ୍ପୃଶେତ୍ତ୍ରିଷବଣଂ ମହାନଦ୍ୟୁପସଙ୍ଗମେ ।
ଚୀର୍ଣ୍ଣାନ୍ତେ ଚୈବ ଗାଂ ଦଦ୍ୟାଦ୍ବ୍ରାହ୍ମଣାନ୍ ଭୋଜୟେଦ୍ଦଶ । ୫୨ ।
ଦୁରାଗୃହସ୍ୟ ବିପ୍ରସ୍ୟ ନିଷିଦ୍ଧାଚରଣସ୍ୟ ଚ ।
ଅନ୍ନଂ ଭୁକ୍ତ୍ୱା ଦ୍ୱିଜଃ କୁର୍ଯ୍ୟାଦିନମେକମଭୋଜନଂ । ୫୩ ।
ସଦାଚାରସ୍ୟ ବିପ୍ରସ୍ୟ ତଥା ବେଦାନ୍ତବାଦିନଃ ।
ଭୁକ୍ତ୍ୱାନ୍ନଂ ମୁଚ୍ୟତେ ପାପାଦହୋରାତ୍ରଂ ତୁ ବୈ ନରଃ । ୫୪ ।
ଉର୍ଦ୍ଧ୍ୱୋଚ୍ଛିଷ୍ଟମଧୋଚ୍ଛିଷ୍ଟମନ୍ତରୀକ୍ଷ ମୃତୌ ତଥା ।
କୃଚ୍ଛ୍ରତ୍ରୟଂ ପ୍ରକୁର୍ବୀତ ଅଶୌଚମରଣେ ତଥା । ୫୫ ।

---

ଇଚ୍ଛା କରେ, ତାହା ହେଲେ ତାହା ବ୍ରାହ୍ମଣଗଣଙ୍କ ନିକଟରେ ପ୍ରକାଶ କରିବ । ୫୦ ।

ଯେବେ କୌଣସି ବ୍ୟକ୍ତି ଶ୍ରାନ୍ତିବଶତଃ, କ୍ରୋଧବଶତଃ, ତମୋଗୁଣ-ଜନିତ ଭ୍ରାନ୍ତିବଶତଃ, କ୍ଷୁଧାବଶତଃ, ପିପାସାବଶତଃ ବା ଭୟବଶତଃ କାତର ହୋଇ ଦାନ ବା ପୁଣ୍ୟକର୍ମ କିଛି କରି ନ ଥାଏ, ତାହା ହେଲେ ତାହାଙ୍କୁ ତିନିଦିନ ଏହିରୂପରେ ପ୍ରାୟଶ୍ଚିତ୍ତ କରିବାକୁ ହେବ । ୫୧ ।

ମହାନଦୀ ସଙ୍ଗମସ୍ଥଳରେ ସେ ପ୍ରତ୍ୟହ ତିନିବାର ସ୍ନାନ କରିବ । ପ୍ରାୟଶ୍ଚିତ୍ତ ଅନୁଷ୍ଠିତ ହେଲେ ଦଶଜଣ ବ୍ରାହ୍ମଣ ଭୋଜନ କରାଇ ଗୋଦ-କ୍ଷିଣା ପ୍ରଦାନ କରିବ । ୫୨ ।

ଯେବେ କୌଣସି ବ୍ରାହ୍ମଣ, ନିଷିଦ୍ଧାଚରଣକାରୀ ଦୁରାଗ୍ରହ ବ୍ରାହ୍ମଣଙ୍କର ଅନ୍ନ ଭୋଜନ କରେ ତାହା ହେଲେ ସେ ଏକଦିନ ଉପବାସ କରି ରହିବ । ୫୩ ।

ଯେଉଁ ବ୍ରାହ୍ମଣ ସଦାଚାରୀ ଓ ବେଦାନ୍ତବାଦୀ ତାହାଙ୍କର ଅନ୍ନ ଯେବେ କେହି ଏକ ଦିବାରାତ୍ର ମାତ୍ର ଭୋଜନ କରନ୍ତି, ତାହା ହେଲେ ସେ ସକଳ-ପାପରୁ ମୁକ୍ତ ହୁଅନ୍ତି । ୫୪ ।

ଯେବେ କେହି ଉର୍ଦ୍ଧ୍ୱୋଚ୍ଛିଷ୍ଟ ହୋଇ ମରେ, ଯେବେ କାହାର ମୃତ୍ୟୁକାଳରେ ମୁଖରେ ବମନାଦି ଥାଏ, ଅଥବା ଯେବେ କେହି ଅଧ ଉଚ୍ଛିଷ୍ଟ ହୋଇ ଅର୍ଥାତ୍ ମଳ ସମେତ ଥାଇ ପ୍ରାଣତ୍ୟାଗ କରେ, କିମ୍ବା ଯେବେ କେହି ଅନ୍ତରୀକ୍ଷରେ ମରେ ତାହା ହେଲେ ତିନିଗୋଟି

କୃଚ୍ଛ୍ରେ ଦେବ୍ୟୟୁତଂ ଚୈବ ପ୍ରାଣାୟାମ-ଶତତ୍ରୟଂ ।
ପୁଣ୍ୟତୀର୍ଥେ ନାର୍ଦ୍ରଶିରଃ ସ୍ନାନଂ ଦ୍ୱାଦଶସଂଖ୍ୟୟା । ୫୬ ।
ଦ୍ୱିଯୋଜନଂ ତୀର୍ଥଯାତ୍ରା କୃଚ୍ଛ୍ରମେକଂ ପ୍ରକଳ୍ପିତଂ । ୫୭ ।
ଗୃହସ୍ଥଃ କାମତଃ କୁର୍ଯ୍ୟାଦ୍ରେତସଃ ସେଚନଂ ଭୁବି ।
ସହସ୍ରଂ ତୁ ଜପେଦ୍ଦେବ୍ୟାଃ ପ୍ରାଣାୟାମୈସ୍ତ୍ରିଭିଃ ସହ । ୫୮ ।
ଚତୁର୍ବେଦୋପପନ୍ନସ୍ତୁ ବିଧିବଦ୍ବ୍ରହ୍ମଘାତକେ ।
ସମୁଦ୍ରସେତୁଗମନପ୍ରାୟଶ୍ଚିତ୍ତଂ ବିନିର୍ଦ୍ଦିଶେତ୍ । ୫୯ ।
ସେତୁବନ୍ଧପଥେ ଭିକ୍ଷାଂ ଚାତୁର୍ବର୍ଣ୍ୟାତ୍ ସମାଚରେତ୍ ।
ବର୍ଜୟିତ୍ୱା ବିକର୍ମସ୍ଥାଂ ଛତ୍ରୋପାନଦ୍ବିବର୍ଜ୍ଜିତଃ । ୬୦ ।
ଅହଂ ଦୁଷ୍କୃତକର୍ମ୍ମା ବୈ ମହାପାତକକାରକଃ ।
ଗୃହଦ୍ୱାରେଷୁ ତିଷ୍ଠାମି ଭିକ୍ଷାର୍ଥୀ ବ୍ରହ୍ମଘାତକଃ । ୬୧ ।

---

କୃଚ୍ଛ୍ରବ୍ରତଦ୍ୱାରା ଶୁଦ୍ଧିଲାଭ କରିବ, ପରନ୍ତୁ ଏପ୍ରକାର ଅବସ୍ଥାରେ ସଂଗ୍ରାମରେ ମୃତ୍ୟୁ ହେଲେ କୌଣସି ଦୋଷ ଘଟିବ ନାହିଁ । ୫୫ ।

କୃଚ୍ଛ୍ରବ୍ରତ କରିବାକୁ ହେଲେ ଦଶସହସ୍ର ଗାୟତ୍ରୀ ଜପ ଓ ତିନିଶତ ପ୍ରାଣାୟାମ କରିବାକୁ ହେବ, ଏବଂ ପୁଣ୍ୟତୀର୍ଥରେ ଅର୍ଦ୍ରମସ୍ତକରେ ଦ୍ୱାଦଶବାର ସ୍ନାନ କରିବ । ୫୬ ।

ପରେ ଦୁଇଯୋଜନ ଦୂରକୁ ତୀର୍ଥ ଯାତ୍ରା କଲେ କୃଚ୍ଛ୍ର ବ୍ରତ ସମ୍ପନ୍ନ ହେବ । ୫୭ ।

ଯେବେ କୌଣସି ଗୃହସ୍ଥ ଇଚ୍ଛାପୂର୍ବକ ଭୂମିରେ ରେତ ସେଚନ କରେ ତାହା ହେଲେ ତାହାକୁ ତିନିଗୋଟି ପ୍ରାଣାୟାମ ଏବଂ ଏକସହସ୍ର ଗାୟତ୍ରୀ ଜପ କରିବାକୁ ହେବ । ୫୮ ।

ଚତୁର୍ବେଦସମ୍ପନ୍ନ ବ୍ରାହ୍ମଣ ବ୍ରହ୍ମହତ୍ୟାକାରୀ ବ୍ୟକ୍ତିକୁ ସେତୁବନ୍ଧ-ଗମନରୂପ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଦେବେ । ୫୯ ।

ସେହି ବ୍ରହ୍ମହତ୍ୟାପାତକକୁ ପାତକୀ ବ୍ୟକ୍ତି ସେତୁବନ୍ଧକୁ ଗମନ କରିବା ସମୟରେ ପଥରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରଙ୍କନିକଟରେ ଭିକ୍ଷା କରିବ, କୁକର୍ମ୍ମନିରତ ବ୍ୟକ୍ତି ନିକଟରେ ଭିକ୍ଷା କରିବ ନାହିଁ । ପାଦରେ ପାଦୁକା ମସ୍ତକରେ ଛତା ବ୍ୟବହାର କରିପାରିବ ନାହିଁ । ୬୦ ।

ସେହିବ୍ୟକ୍ତି ଏହିପରି ବୋଲି ଭିକ୍ଷା କରିବ, ଅମ୍ଭେ ଦୁଷ୍କର୍ମ୍ମକାରୀ ଓ ମହାପାତକୀ, ଅମ୍ଭେ ବ୍ରହ୍ମହତ୍ୟା କରିଅଛୁଁ ଅମ୍ଭେ ଭିକ୍ଷାର୍ଥୀ ହୋଇ ଗୃହଦ୍ୱାରେ ଅବସ୍ଥାନ କରିଅଛୁଁ । ୬୧ ।

ଗୋକୁଳେଷୁ ବସେଚ୍ଚୈବ ଗ୍ରାମେଷୁ ନଗରେଷୁ ଚ ।
ତଥା ବନେଷୁ ତୀର୍ଥେଷୁ ନଦୀପ୍ରସ୍ରବଣେଷୁ ଚ । ୬୨ ॥
ଏତେଷୁ ଖ୍ୟାପୟନ୍ନେନଃ ପୁଣ୍ୟଂ ଗତ୍ୱା ତୁ ସାଗରଂ ।
ଦଶଯୋଜନବିସ୍ତୀର୍ଣ୍ଣଂ ଶତଯୋଜନମାୟତଂ । ୬୩ ॥
ରାମଚନ୍ଦ୍ରସମାଦିଷ୍ଟଂ ନଳସଞ୍ଚୟସଞ୍ଚିତଂ ।
ସେତୁଂ ଦୃଷ୍ଟ୍ୱା ସମୁଦ୍ରସ୍ୟ ବ୍ରହ୍ମହତ୍ୟାଂ ବ୍ୟପୋହତି । ୬୪ ।
ଯଜେତ ବାଶ୍ୱମେଧେନ ରାଜା ତୁ ପୃଥିବୀପତିଃ ।
ପୁନଃ ପ୍ରତ୍ୟାଗତୋ ବେଶ୍ମ ବାସାର୍ଥମୁପସର୍ପତି । ୬୫ ।
ସପୁତ୍ରଃ ସହ ଭୃତ୍ୟୈଶ୍ଚ କୁର୍ଯ୍ୟାଦ୍ବ୍ରାହ୍ମଣଭୋଜନଂ ।
ଗାଶ୍ଚୈବୈକଶତଂ ଦଦ୍ୟାଚ୍ଚାତୁର୍ବେଦ୍ୟେଷୁ ଦକ୍ଷିଣାଂ । ୬୬ ।
ବ୍ରାହ୍ମଣାନାଂ ପ୍ରସାଦେନ ବ୍ରହ୍ମହା ତୁ ବିମୁଚ୍ୟତେ ।
ସବନସ୍ଥାଂ ସ୍ତ୍ରିୟଂ ହତ୍ୱା ବ୍ରହ୍ମହତ୍ୟାବ୍ରତଂ ଚରେତ୍ । ୬୭ ।

---

ଏହି ବ୍ରହ୍ମଘାତକ ବ୍ୟକ୍ତି ଗ୍ରାମରେ, ନଗରରେ, ବନରେ, ତୀର୍ଥରେ ଓ ନଦୀପ୍ରସ୍ରବଣରେ ବାସ କରିବ । ୬୨ ।

ପରନ୍ତୁ ସେହି ସମୁଦାୟ ସ୍ଥାନରେ ନିଜକୃତପାପ ପ୍ରକାଶ କରିବାକୁ ହେବ । ପରେ ପବିତ୍ର ସାଗରକୁ ଗମନ ପୂର୍ବକ ଶତଯୋଜନ ଦୀର୍ଘ ଦଶଯୋଜନ ଓସାର । ୬୩ ।

ରାମଚନ୍ଦ୍ରଙ୍କ ଆଜ୍ଞାନୁସାରେ ନଳନାମକ ବାନରଙ୍କଦ୍ୱାରା ପ୍ରସ୍ତୁତ ସମୁଦ୍ରର ସେତୁ ଦର୍ଶନ କଲେ ବ୍ରହ୍ମହତ୍ୟାଜନିତ ପାପ କ୍ଷୟ ହୁଏ । ୬୪ ।

ଅଥବା ଏହି ବ୍ରହ୍ମହତ୍ୟାପାତକକ୍ଷୟ ନିମିତ୍ତ ପୃଥିବୀପତି ରାଜା ଅଶ୍ୱମେଧ ଯଜ୍ଞ କରିବେ । ଅନନ୍ତର ସେହି ପାତକୀ ସେତୁବନ୍ଧରୁ ବା ଅଶ୍ୱମେଧର ଅଶ୍ୱରକ୍ଷାର୍ଥ ଭ୍ରମଣରୁ ପ୍ରତିନିବୃତ୍ତ ହୋଇ ବାସ ନିମିତ୍ତ ନିଜ-ଭବନକୁ ଗମନ କରିବ । ୬୫ ।

ତତ୍ପରେ ପୁତ୍ରଗଣ ସହିତ ଓ ଭୃତ୍ୟବର୍ଗ ସହିତ ବ୍ରାହ୍ମଣଭୋଜନ କରାଇ ଚତୁର୍ବେଦବ୍ରାହ୍ମଣଗଣଙ୍କୁ ଏକଶତ ଗୋ ଦକ୍ଷିଣା ପ୍ରଦାନ କରିବ ।୬୬

ଏହାପରେ ବ୍ରାହ୍ମଣଗଣଙ୍କ ପ୍ରସାଦରେ ବ୍ରହ୍ମହତ୍ୟାକାରୀ ବ୍ରହ୍ମହତ୍ୟା-ଜନିତ ପାତକରୁ ମୁକ୍ତ ହୋଇ ପାରେ । ଯେଉଁ ନାରୀ ଯଜ୍ଞ ବା ବ୍ରତରେ ଦୀକ୍ଷିତା ଥିବ, ତାହାକୁ ବଧ କଲେ ବ୍ରହ୍ମହତ୍ୟାପାତକର ପ୍ରାୟଶ୍ଚିତ୍ତ କରିବାକୁ ହେବ । ୬୭ ।

ମଦ୍ୟପନଂ ଦ୍ୱିଜଃ କୁର୍ଯ୍ୟାନ୍ନଦୀଂ ଗତ୍ୱା ସମୁଦ୍ରଗାଂ ।
ଚାନ୍ଦ୍ରାୟଣେ ତତଶ୍ଚୀର୍ଣ୍ଣେ କୁର୍ଯ୍ୟାଦ୍ ବ୍ରାହ୍ମଣଭୋଜନଂ । ୬୮ ।
ଅନଡ୍ବାହସହିତାଂ ଗାଂଚ ଦଦ୍ୟାଦ୍ବିପ୍ରେଷୁ ଦକ୍ଷିଣାଂ । ୬୯ ।
ଅପହୃତ୍ୟ ସୁବର୍ଣ୍ଣଂ ତୁ ବ୍ରାହ୍ମଣସ୍ୟ ତତଃ ସ୍ୱୟଂ ।
ଗଚ୍ଛେନ୍ମୁଷଲମାଦାୟ ରାଜାଭ୍ୟାସଂ ବଧାୟ ତୁ । ୭୦ ।
ତତଃ ଶୁଦ୍ଧିମବାପ୍ନୋତି ରାଜ୍ଞାସୌ ମୁକ୍ତଏବ ଚ ।
କାମକାରକୃତଂ ଯତ୍ସ୍ୟାନ୍ନାନ୍ୟଥା ବଧମର୍ହତି । ୭୧ ।
ଆସନାଚ୍ଛୟନାଦ୍ ଯାନାତ୍ ସମ୍ଭାଷାତ୍ ସହଭୋଜନାତ୍ ।
ସଂକ୍ରାମନ୍ତି ହି ପାପାନି ତୈଲବିନ୍ଦୁରିବାମ୍ଭସି । ୭୨ ।
ଚାନ୍ଦ୍ରାୟଣଂ ଯାବକଂଚ ତୁଲାପୁରୁଷ ଏବଚ ।
ଗବାଂ ଚୈବାନୁଗମନଂ ସର୍ବପାପପ୍ରଣାଶନଂ । ୭୩ ।

---

ଯେଉଁ ବ୍ରାହ୍ମଣ ମଦ୍ୟପାନ କରିବ, ସେ ସାଗରଗାମିନୀ ନଦୀକୁ ଗମନପୂର୍ବକ ଚାନ୍ଦ୍ରାୟଣ ବ୍ରତ କରି ବ୍ରାହ୍ମଣଭୋଜନ କରାଇବ । ୬୮ ।

ପରେ ବ୍ରାହ୍ମଣଙ୍କୁ ଏକ ଧେନୁ ଓ ଏକ ବୃଷ ଦକ୍ଷିଣା ସ୍ୱରୂପ ଦାନ କରିବାକୁ ହେବ । ୬୯ ।

ଯେଉଁ ବ୍ୟକ୍ତି ବ୍ରାହ୍ମଣଙ୍କ ସୁବର୍ଣ୍ଣ ଅପହରଣ କରିବ, ସେ ସ୍ୱୟଂ ଏକ ମୂଷଳ ଯେନି ବଧଦଣ୍ଡ ନିମିତ୍ତ ରାଜାଙ୍କ ନିକଟକୁ ଗମନ କରିବ । ୭୦ ।

ଯେବେ ସେହି ପାପ କାମକୃତ ନ ହୁଏ, ତାହା ହେଲେ ରାଜା ତାହାକୁ ଛାଡ଼ିଦେବେ । ତହିଁରେ ମଧ୍ୟ ତାହାର ସେହି ପାପ କ୍ଷୟ ହେବ । ଯେବେ ସେହି ପାପ ଜ୍ଞାନକୃତ ହୁଏ, ତାହା ହେଲେ ରାଜା ତାହାର ପ୍ରାଣଦଣ୍ଡ କରିବେ । ୭୧ ।

ଜଳରେ ନିକ୍ଷିପ୍ତ ତୈଳବିନ୍ଦୁ ଯେମନ୍ତ ଚତୁର୍ଦିଗରେ ସଂକ୍ରମଣ କରେ, ତାହାତୁଲ୍ୟ, ଏକତ୍ର ଉପବେଶନଦ୍ୱାରା, ଏକତ୍ର ଶୟନଦ୍ୱାରା, ଏକତ୍ର ଗମନଦ୍ୱାରା, ଏକତ୍ର ଭୋଜନଦ୍ୱାରା, ଏବଂ ସମ୍ଭାଷଣଦ୍ୱାରା ପାପସକଳ ଶରୀରାନ୍ତରରେ ସଞ୍ଚାରିତ ହୁଏ । ୭୨ ।

ଚାନ୍ଦ୍ରାୟଣ, ଯାବକାହାର, ତୁଲାପୁରୁଷଦାନ, ଓ ଗାଭୀର ଅନୁଗମନ ଏହାଦ୍ୱାରା ସମୁଦାୟ ପାପ କ୍ଷୟ ହୁଏ । ୭୩

ଏତତ୍ ପାରାଶରଂ ଶାସ୍ତ୍ରଂ ଶ୍ଳୋକାନାଂ ଶତପଞ୍ଚକଂ ।
ଦ୍ୱିନବତ୍ୟା ସମାଯୁକ୍ତଂ ଧର୍ମଶାସ୍ତ୍ରସ୍ୟ ସଂଗ୍ରହଃ । ୭୪ ।
ଯଥାଧ୍ୟୟନକର୍ମାଣି ଧର୍ମଶାସ୍ତ୍ରମିଦଂ ତଥା ।
ଅଧ୍ୟେତବ୍ୟଂ ପ୍ରଯତ୍ନେନ ନିୟତଂ ସ୍ୱର୍ଗଗାମିନା । ୭୫ ।
ଇତି ଶ୍ରୀ ପାରାଶରେ ଧର୍ମଶାସ୍ତ୍ରେ ଦ୍ୱାଦଶୋଽଧ୍ୟାୟଃ ।

—୦O*O୦—

ପରାଶରସଂହିତା ସମ୍ପୂର୍ଣ୍ଣା ।

---

ଏହି ପରାଶର-ସଂହିତାରେ ୫୯୨ ପାଞ୍ଚଶତ ବୟାଣୋଇ ଶ୍ଳୋକରେ ଧର୍ମଶାସ୍ତ୍ର ସଂଗୃହୀତ ହୋଇଅଛି । ୭୪ ।

ଅଧ୍ୟୟନକାର୍ଯ୍ୟ ଯେମନ୍ତ କର୍ତ୍ତବ୍ୟ ଏହି ପରାଶରୋକ୍ତ ଧର୍ମଶାସ୍ତ୍ର ମଧ୍ୟ ତେମନ୍ତ କର୍ତ୍ତବ୍ୟ । ଯାହାଙ୍କର ସ୍ୱର୍ଗକୁ ଗମନ କରିବାକୁ ଇଚ୍ଛା ଥିବ, ସେ ନିୟତ ଏହା ପାଠ କରିବେ । ୭୫ ।

ପରାଶର-ସଂହିତା ଦ୍ୱାଦଶଅଧ୍ୟାୟ

ସମାପ୍ତ

---

ପରାଶର-ସଂହିତାନୁବାଦ ସମ୍ପୂର୍ଣ୍ଣ ।

---

## ଦୁରୂହ ଶବ୍ଦର ଅର୍ଥ ।

ଅ, ଶ୍ଳୋ

୧ । ୫ ବଦରିକାଶ୍ରମ—ତୀର୍ଥ ବିଶେଷ, ନାରାୟଣ ଓ ବ୍ୟାସଙ୍କର ଆଶ୍ରମ । ଯଥା; ନାରାୟଣୋ ବିଭୁର୍ବିଷ୍ଣୁଃ ଶାଶ୍ୱତଃ ପୁରୁଷୋତ୍ତମଃ ଉତ୍ୟାଦି- ଯଶସଃ ପୁଣ୍ୟାଂ ବିଶାଳାଂ ବଦରୀମନୁ । ଆଶ୍ରମଃ ଖ୍ୟାୟତେ ପୁଣ୍ୟ- ସ୍ତ୍ରିଷୁ ଲୋକେଷୁ ବିଶ୍ରୁତଃ ॥ ଇତି ମହାଭାରତେ ବନପର୍ବେ ।

୧ । ୬ ସମାକୀର୍ଣ୍ଣ—ବ୍ୟାପ୍ତ ।

୧ । ୭ ସିଦ୍ଧଗଣ,—ଯେଉଁମାନେ ଅଣିମା ଲଘିମା ପ୍ରଭୃତି ଅଷ୍ଟବିଧ ସିଦ୍ଧି- ଲାଭ କରିଅଛନ୍ତି ।

୧ । ୧୯ କଳ୍ପ,—୪୩୨୦୦୦ ବର୍ଷ କଳିଯୁଗ, ଏହାର ଦ୍ୱିଗୁଣ ଅର୍ଥାତ୍ ୮୬୪୦୦୦ ବର୍ଷ ଦ୍ୱାପରଯୁଗ, ତ୍ରିଗୁଣ ଅର୍ଥାତ୍ ୧୨୯୬୦୦୦ ବର୍ଷ ତ୍ରେତାଯୁଗ, ଚତୁର୍ଗୁଣ ଅର୍ଥାତ୍ ୧୭୨୮୦୦୦ ବର୍ଷ ସତ୍ୟଯୁଗ, ହୁଏ ଏହି ଚତୁର୍ଯୁଗର ସମଷ୍ଟି ଅର୍ଥାତ୍ ୪୩୨୦୦୦୦ ବର୍ଷରେ ଏକ କଳ୍ପ ହୁଏ । ପ୍ରତ୍ୟେକ କଳ୍ପର ଭିନ୍ନ ନାମ ଅଛି । ଆଉ ବର୍ତ୍ତ- ମାନ ଶ୍ୱେତବରାହକଳ୍ପର ସତ୍ୟ ତ୍ରେତା ଓ ଦ୍ୱାପର ଯୁଗ ଅତୀତ ହୋଇଅଛି । ଅଧୁନା କଳିଯୁଗର ୪୯୭୯ ବର୍ଷ ମା ୬ ସ ଯାଇ- ଅଛି । ଆଉ ୪୨୭୦୨୦ ବର୍ଷ ମା ୬ ସ ପରେ ଶ୍ୱେତବରାହକଳ୍ପ ଅତୀତ ହେବ ।

୧ । ୧୯ ଶ୍ରୁତି,—ବେଦ ।

୧ । ୧୯ ସ୍ମୃତି,—ମହର୍ଷିପ୍ରଣୀତ ବ୍ୟବସ୍ଥାପକ ଧର୍ମ୍ମଶାସ୍ତ୍ର ।

୧ । ୧୯ ସଦାଚାର,—ଧର୍ମ୍ମାନୁଗତ ଆଚାର ବ୍ୟବହାର ।

୧ । ୩୧ ଅଗ୍ନିହୋତ୍ର—ଯଜ୍ଞ ବିଶେଷ । ଏହି ଯଜ୍ଞ ଦୁଇ ପ୍ରକାର, ମାସ- ସାଧ୍ୟ ଓ ଯାବଜ୍ଜୀବନସାଧ୍ୟ । ଯଜୁର୍ବେଦରେ ଏହାର ପ୍ରୟୋଗ ଓ ମନ୍ତ୍ର ଅଛି ।

୧ । ୩୮ ସ୍ୱାଧ୍ୟାୟ,—ବେଦାଧ୍ୟୟନ ।

୧ । ୩୮ ବୈଶ୍ୱଦେବ,—ବିଶ୍ୱଦେବାଙ୍କର ଅର୍ଚ୍ଚନା, ବିଶ୍ୱଦେବ-ସମ୍ବନ୍ଧ ହୋମାଦି । ଆହ୍ନିକପ୍ରୟୋଗତତ୍ତ୍ୱରେ ଏହାର ପ୍ରୟୋଗାଦି ଅଛି ।

୧ । ୪୧ ଚରଣ,—ବେଦର ଅଂଶ ଅର୍ଥାତ୍ କୌଣସି ବେଦ । ଚରଣ- ବ୍ୟୂହ ଓ ଚରଣବ୍ୟୂହ ଭାଷ୍ୟ ଦେଖ ।

ଅ; ଶ୍ଲୋ,

୧ । ୪୪ ବୈଶ୍ୱଦେବବଳ,—ଗୃହସ୍ଥର କର୍ତ୍ତବ୍ୟ ବିଶ୍ୱଦେବଙ୍କର ଅର୍ଚ୍ଚନା

୧ । ୪୫ ଯତି,—ଯେ ସକଳ ଅବଧୂତ ବ୍ରହ୍ମମନ୍ତ୍ରୋପାସକ, ସେମାନେ ଯେବେ ଗୃହସ୍ଥାଶ୍ରମରେ ଥାନ୍ତି, ତଥାପି ସେମାନଙ୍କୁ ଯତି ବୋଲ୍ୟାଏ । ଏକ ସହସ୍ର ବ୍ରହ୍ମଗୃହୀ, ଏକଶତ ବାନପ୍ରସ୍ଥ, ଏକକୋଟି ବ୍ରାହ୍ମଣ, ଏକଜଣ ଯତି, ଏମାନେ ପରସ୍ପର ତୁଲ୍ୟ ।

୧ । ୪୭ ଭିକ୍ଷୁକ,—ଭିକ୍ଷୁକଦ୍ୱିବିଧ, ବ୍ରହ୍ମାବଧୂତ ଓ ଶୈବାବଧୂତ, ଏମାନେ ପୂର୍ଣ୍ଣ ହେଲେ ପରମହଂସ ଶବ୍ଦବାଚ୍ୟ ହୁଅନ୍ତି । ଅପୂର୍ଣ୍ଣ ହେଲେ ଏମାନଙ୍କୁ ପରିବ୍ରାଜକ ବା ପରିବ୍ରାଟ୍ ବୋଲ୍ୟାଏ ।

୧ । ୫୩ ବେଦାଙ୍ଗ,—ଶିକ୍ଷାଶାସ୍ତ୍ର; କଲ୍ପଶାସ୍ତ୍ର; ବ୍ୟାକରଣଶାସ୍ତ୍ର; ନିରୁକ୍ତ; ଜ୍ୟୋତିଃଶାସ୍ତ୍ର ଓ ଛନ୍ଦଃଶାସ୍ତ୍ର, ଏହି ସକଳ ଶାସ୍ତ୍ର ବେଦାଙ୍ଗ ବୋଲି ନିର୍ଦ୍ଦିଷ୍ଟ ହୋଇଥାଏ ।

୧ । ୫୪ ସର୍ବକାମପ୍ରଦାୟିନୀ;—ସର୍ବାଭିଳାଷପରିପୂରକା ।

୧ । ୫୭ ଅନୃତାଗୃହୀ,—ଯେ ମିଥ୍ୟା ବ୍ୟବହାର କରନ୍ତି ।

୧ । ୫୯ ଅଙ୍ଗାରକାର;—ଯେଉଁମାନେ ଗଛ କାଟି ପୋଡ଼ି କୋଇଲା ପ୍ରସ୍ତୁତ କରନ୍ତି ।

୧ । ୬୨ ଢକ୍କ,—ଢୋଲ ।

୨ । ୨ ଷଟ୍‌କର୍ମ୍ମ,—ସ୍ନାନ, ଜପ, ହୋମ, ଅଧ୍ୟୟନ, ଦେବପୂଜା, ଓ ଅତିଥିସେବା, ଏହାକୁ ଷଟ୍‌କର୍ମ୍ମ ବୋଲ୍ୟାଏ ।୧।୩୯ ମୂଳଦେଖ

୨ । ୫ ଦୃପ୍ତ,—ବଳଗର୍ବିତ ।

୨ । ୬ ସ୍ନାତକ,—ସ୍ନାତକ ତିନିପ୍ରକାର, ଯେ ବେଦ ଅଧ୍ୟୟନ କରି ଗୃହସ୍ଥାଶ୍ରମରେ ପ୍ରବେଶ କରନ୍ତି, ସେ ବ୍ରତସ୍ନାତକ, ଯେ ସେହି ବ୍ରହ୍ମଚର୍ଯ୍ୟ ବ୍ରତରୁ ଗୁରୁକୁଳରେ ଥାନ୍ତି, ସେ ବିଦ୍ୟାସ୍ନାତକ, ତଭିନ୍ନ ବ୍ରହ୍ମଚାରୀଙ୍କୁ ଉଭୟସ୍ନାତକ ବୋଲ୍ୟାଏ ।

୨ । ୭ ପଞ୍ଚଯଜ୍ଞ,— ଗୃହସ୍ଥର କର୍ତ୍ତବ୍ୟ ପଞ୍ଚପ୍ରକାର ଯଜ୍ଞ । ଯଥା, ବ୍ରହ୍ମଯଜ୍ଞୋ ନୃଯଜ୍ଞଶ୍ଚ ଦୈବଯଜ୍ଞଶ୍ଚ ସତ୍ତମ । ପିତୃଯଜ୍ଞୋ ଭୂତଯଜ୍ଞଃ ପଞ୍ଚଯଜ୍ଞାଃ ପ୍ରକୀର୍ତ୍ତିତାଃ, ଇତି ପଦ୍ମପୁରାଣ କ୍ରିୟାଯୋଗସାର ୧୬ ଅଧ୍ୟାୟ । ପାଠୋ ହୋମଶ୍ଚାତିଥୀନାଂ ସପର୍ଯ୍ୟା ତର୍ପଣଂ ବଳିଃ । ଏତେ ପଞ୍ଚ ମହାଯଜ୍ଞା ବ୍ରହ୍ମଯଜ୍ଞାଦିନାମକୈଃ । ଇତି ଅମରକୋଷଃ

ଅ, ଶ୍ଳୋ,

୨ । ୭ ଜଭୂଦୀକ୍ଷା,—ଯଜ୍ଞେ ନିଯୋଗ ।
୨ । ୧୦ ପାଶଜୀବୀ,—ଯେ ବ୍ୟକ୍ତି ପାଶ ପକାଇ ପଶୁ ପକ୍ଷୀ ଧରେ ।
୨ । ୧୦ ଶାକୁନିକ,—ପକ୍ଷି ମାରିବାର ।
୨ । ୧୨ ଅଦାତାକର୍ଷକ,—ଯେ ଗୃହ କର ଦାନ ନ କରେ ।
୩ । ୩ ପରିଚର୍ଯ୍ୟା,—ଶୁଶ୍ରୂଷା, ସେବା ।
୩ । ୫ ସାଗ୍ନି ଓ ନିରଗ୍ନି—ଯେ ସକଳ ବ୍ରାହ୍ମଣ ଯାବଜ୍ଜୀବନ ଅଗ୍ନି ରକ୍ଷା କରନ୍ତି, ଏବଂ ସେହି ଅଗ୍ନିରେ ଯେଉଁମାନଙ୍କର ଜାତ-କର୍ମ୍ମ ଅବଧି ଅନ୍ତ୍ୟେଷ୍ଟିକ୍ରିୟା ପର୍ଯ୍ୟନ୍ତ ସମୁଦାୟ ସଂସ୍କାରାଦି ସମ୍ପନ୍ନ ହୁଏ, ସେମାନେ ସାଗ୍ନିବ୍ରାହ୍ମଣ ତଦ୍ଭିନ୍ନ ସକଳ ବ୍ରାହ୍ମଣଙ୍କୁ ନିରଗ୍ନି ବୋଲାଯାଏ ।
୩ । ୭ ସପିଣ୍ଡ,—ଯେଉଁମାନେ ପିତା ବା ମାତାମହ ଅବଧି ଊର୍ଦ୍ଧ୍ୱତନ ତିନିପୁରୁଷମଧ୍ୟରେ ଉତ୍ପନ୍ନ ହୋଇଥିବେ । ସେମାନଙ୍କୁ ସପିଣ୍ଡ ବୋଲାଯାଏ ।
୩ । ୮ ପ୍ରତିଗ୍ରହ,—ଆଦାନ, ଗ୍ରହଣ ।
୩ । ୧୧ ସଗୋତ୍ର,—ଏକଗୋତ୍ରରେ ଉତ୍ପନ୍ନ ।
୩ । ୧୨ ଭୃଗୁ,—ଅରଣ୍ୟକଣ୍ଟକବ୍ୟାପ୍ତ ଗିରି—ପାର୍ଶ୍ୱୋଚ୍ଚଦେଶ ଯେଉଁ ସ୍ଥାନରୁ ପତନ ହେଲେ ମୃତ୍ୟୁ ହୁଏ ।
୩ । ୧୨ ଉଦକକ୍ରିୟା,—ତର୍ପଣ ।
୩ । ୨୧ ଚୂଡ଼ାକରଣ,—ବାଳକର ସଂସ୍କାରବିଶେଷ, ସଂସ୍କାରତତ୍ତ୍ୱ ଦେଖ ।
୩ । ୨୨ ଶ୍ରୋତ୍ରିୟ,—ବେଦାଧ୍ୟାୟୀ ବ୍ରାହ୍ମଣ । ଯଥା ଜନ୍ମନା ବ୍ରାହ୍ମଣୋ ଜ୍ଞେୟଃ ସଂସ୍କାରୈର୍ଦ୍ୱିଜ ଉଚ୍ୟତେ । ବେଦାଭ୍ୟାସୀ ଭବେଦ୍ୱିପ୍ରଃ ଶ୍ରୋତ୍ରିୟ ସ୍ତ୍ରିଭିରେବହି, ଇତି ପଦ୍ମପୁରାଣେ ।
୩ । ୨୮ ସତୀର୍ଥ,—ସହାଧ୍ୟାୟୀ ।
୩ । ୨୮ ଆହିତାଗ୍ନି,—ସାଗ୍ନିବ୍ରାହ୍ମଣ । ୩ । ୫ । ଟୀକା, ସାଗ୍ନିଶବ୍ଦ ଦେଖ ।
୩ । ୩୦ ଗୃହମେଧୀ,—ପଞ୍ଚଯଜ୍ଞନିରତ ଗୃହସ୍ଥ । ୨।୨ ପଞ୍ଚଯଜ୍ଞ ଶବ୍ଦ ଦେଖ
୩ । ୩୨ ପରିବ୍ରାଟ୍,—ପରିବ୍ରାଜକ ଆଗମୋକ୍ତ ଅପୂର୍ଣ୍ଣ ଅବଧୂତ ।

ଅ, ଶ୍ଳୋ,

୩ । ୩୯ ସ୍ୱର୍ଗାଙ୍ଗନା,—ଅପ୍ସରା ।

୩ । ୪୧ ଶକ୍ତି,—ଅସ୍ତ୍ରବିଶେଷ ।

୩ । ୪୧ ରୁଷ୍ଟି,—ଖଡ୍ଗବିଶେଷ ।

୩ । ୫୩ ସୋମଯାଗ,—ଯେଉଁ ଯଜ୍ଞରେ ସୋମରସ ପାନ କରିବାକୁ ହୁଏ ।

୩ । ୪୨ ପ୍ରାଣାୟାମ,—ପ୍ରାଣବାୟୁ ସଂଯମ ନାମ ପ୍ରାଣାୟାମ । ଏହି ପ୍ରାଣାୟାମ ପୂରକ, କୁମ୍ଭକ ଓ ରେଚକଦ୍ୱାରା ସମ୍ପାଦିତ ହୋଇଥାଏ । ଯେଉଁ ପ୍ରକ୍ରିୟାଦ୍ୱାରା ବାୟୁ ଆକର୍ଷଣ କରାଯାଏ, ତାହାର ନାମ ପୂରକ । ଯେଉଁ ପ୍ରକ୍ରିୟାଦ୍ୱାରା ନିଶ୍ୱାସବାୟୁ ରୋଧ କରାଯାଏ, ତାହାର ନାମ କୁମ୍ଭକ । ଯେଉଁ ପ୍ରକ୍ରିୟା ଦ୍ୱାରା ଶରୀରସ୍ଥ ବାୟୁ ପରିତ୍ୟାଗ କରାଯାଏ, ତାହାର ନାମ ରେଚକ । ଏହି ପ୍ରାଣାୟାମ ଦୁଇପ୍ରକାର ସମନ୍ତ୍ରକ ଓ ଅମନ୍ତ୍ରକ ।

୩ । ୬୩ ପ୍ରତିନିବୃତ୍ତ ହେବ,—ଫେରିଆସିବ ।

୪ । ୧ ଉଦ୍ବନ୍ଧନ,—ଗଳାରେ ଦଉଡ଼ି ଦେବା ।

୪ । ୪ ତପ୍ତକୃଚ୍ଛ୍ର,—ବ୍ରତବିଶେଷ । ଯଥା, ପୟୋ ଘୃତ ମୁଦକଂ ବାୟୁରେତ୍ତପ୍ତଂ ପ୍ରତ୍ୟହଂ ପିବେତ୍ । ସ ତପ୍ତକୃଚ୍ଛ୍ରଃ ଇତି ଗୌତମସଂହିତା ।

୪ । ୧୦ କୃଚ୍ଛ୍ର ବ୍ରତ,—କଷ୍ଟସାଧ୍ୟ ସାନ୍ତପନାଦିବ୍ରତ । ଅଥବା ୧୨ । ୬୨ ମୂଳଦେଖ ।

୪ । ୧୧ କୃଚ୍ଛ୍ରସାନ୍ତପନ,—କଷ୍ଟସାଧ୍ୟ ବ୍ରତବିଶେଷ, ଯଥା କୁଶୋଦକଂଚ ଗୋକ୍ଷୀରଂ ଦଧି ମୂତ୍ରଂ ଶକୃଦ୍‌ଘୃତଂ । ଜଗ୍ଧ୍ୱା ପରେଽହ୍ନ୍ୟୁପବସେତ୍ କୃଚ୍ଛ୍ରଂ ସାନ୍ତପନଂ ଚରନ୍ । ଇତି ଯାଜ୍ଞବଲ୍କ୍ୟସଂହିତା ।

୪ । ୧୧ ପରାକବ୍ରତ,—ବ୍ରତବିଶେଷ । ଯଥା ଯତାତ୍ମନୋଽପ୍ରମତ୍ତସ୍ୟ ଦ୍ୱାଦଶାହମଭୋଜନଂ । ପରାକୋ ନାମ କୃଚ୍ଛ୍ରୋଽୟଂ ସର୍ବପାପପ୍ରଣୋଦନଃ । ଇତି ମନୁଃ ।

୪ । ୧୨ ଚାନ୍ଦ୍ରାୟଣବ୍ରତ,—ବ୍ରତବିଶେଷ । ଏହା ଚାରିପ୍ରକାର ପିପିଲିକାମଧ୍ୟାଖ୍ୟ ୧, ଯବମଧ୍ୟାକ୍ଷ ୨, ଯତିଚାନ୍ଦ୍ରାୟଣ ୩, ଶିଶୁଚାନ୍ଦ୍ରାୟଣ ୪, । ଯଥା, ଏକୈକଂ ହ୍ରାସୟେତ୍ ପିଣ୍ଡଂ କୃଷ୍ଣେ ଶୁକ୍ଳେ ଚ ବର୍ଦ୍ଧୟେତ୍ । ଉପସ୍ପୃଶଂ ସ୍ତ୍ରିଷବଣ ମେତଚ୍ଚାନ୍ଦ୍ରାୟଣଂ ସ୍ମୃତଂ ଇତିମନୁଃ । ଏତଦେବ ପିପିଲିକାମଧ୍ୟାକ୍ଷ ଇତ୍ୟାଦି ।

ଅ, ଶ୍ଳୋ,

୪ । ୧୬ କୃଚ୍ଛ୍ରବ୍ରତ,—କଷ୍ଟସାଧ୍ୟ ସାନ୍ତପନାଦ୍ଦି ବ୍ରତ ।

୪ । ୨୨ ଅଗ୍ନିହୋତ୍ରୀ,—ଯେ ଅଗ୍ନିହୋତ୍ର ଯଜ୍ଞ କରନ୍ତି । ୧ । ୩୧ ଟୀକା ଅଗ୍ନିହୋତ୍ର ଶବ୍ଦ ଦେଖ ।

୪ । ୨୩ କୃଚ୍ଛ୍ରାତିକୃଚ୍ଛ୍ରଃ,—ବ୍ରତବିଶେଷଃ । ଦ୍ୱାଦଶରାତ୍ରଂ ନିରାହାରଃ ସ କୃଚ୍ଛ୍ରାତିକୃଚ୍ଛ୍ରଃ । ଇତି ବ୍ରହ୍ମପୁରାଣଂ । ଅଥବା ଚରେନ୍ନ କୃଚ୍ଛ୍ରାତିକୃଚ୍ଛ୍ରଂ ଚ ପିବେତ୍ତୋୟଂ ଚ ଶୀତଳଂ । ଏକବିଂଶତି ରାତ୍ରଂ ତୁ କାଲେଷ୍ୱେତେଷୁ ସଂଯତଃ । କାଲେଷ୍ୱିତି ପ୍ରାତଃ ସାୟଂ ମଧ୍ୟାହ୍ନେଷୁ ଇତି ପ୍ରାୟଶ୍ଚିତ୍ତବିବେକଃ ।

୪ । ୨୫ ପରନାଷ୍ଟ-ପୁତ୍ର,—ସୋଦରଭିନ୍ନ, ବୈମାତ୍ରେୟ ଭ୍ରାତା ।

୪ । ୨୭ ପ୍ରବ୍ରଜ୍ୟା,—ସନ୍ନ୍ୟାସ ।

୪ । ୨୮ ନୈଷ୍ଠିକ—ବ୍ରହ୍ମଚାରୀ, ଯେ ବ୍ରହ୍ମଚର୍ଯ୍ୟ କରି ଯାବଜ୍ଜୀବନ ଗୁରୁକୁଳରେ ବାସ କରନ୍ତି । ଯଥା, ନୈଷ୍ଠିକୋ ବ୍ରହ୍ମଚାରୀ ବ-ବସେଦାଚାର୍ଯ୍ୟ-ସନ୍ନିଧୌ । ଇତ୍ୟାଦ ଗରୁଡ଼ପୁରାଣ ।

୪ । ୩୦ ବ୍ୟାଳଗ୍ରାହୀ,—ଯେ ବ୍ୟକ୍ତି ସର୍ପ ଧରେ ।

୫ । ୪ କୁଶୋଦକ,—କୁଶରୁ ନିଃସୃତଜଳ ।

୫ । ୬ ଅବଲୀଢ଼,—ଗ୍ରହିବାର ।

୫ । ୬ ବଳଖିତ,—ଖାଇ ଛାଡ଼ିବାର ।

୫ । ୭ ଜମ୍ବୁକ,—ଶୃଗାଳ ।

୫ । ୭ ବୃକ,—କେନ୍ଦୁଅବ୍ୟାଘ୍ର ।

୫ । ୧୦ ଶ୍ୱପାକ,—ଚଣ୍ଡାଳବିଶେଷ । କ୍ଷତ୍ତୁର୍ଜାତସ୍ତଥୋଗ୍ରାୟାଂ ଶ୍ୱପାକ ଇତି କୀର୍ତ୍ତ୍ୟତେ । ଇତି ମନୁସଂହିତା ।

୫ । ୧୧ ଲୌକିକ ଅଗ୍ନି,—ଯେଉଁ ଅଗ୍ନି ଯାବଜ୍ଜୀବନ ସ୍ଥାପିତ ଓ ସଂସ୍କୃତ ନୁହେ ।

୫ । ୧୨ ପ୍ରାଜାପତ୍ୟ,—ଦ୍ୱାଦଶାହସାଧ୍ୟ ବ୍ରତବିଶେଷ । ତିନିଦିନ କେବଳ ରାତ୍ରିରେ ଭୋଜନ ୨୨ ଗ୍ରାସ । ତିନିଦିନ କେବଳ ଦିନରେ ଭୋଜନ ୨୬ ଗ୍ରାସ । ତିନିଦିନ ଅଯାଚିତଭୋଜନ ୨୪ ଗ୍ରାସ ତିନିଦିନ ଉପବାସ, ପ୍ରାୟଶ୍ଚିତ୍ତତତ୍ତ୍ୱ ଦେଖ ।

୫ । ୧୪ ଅହିତାଗ୍ନି, ଯାବଜ୍ଜୀବନ ଯାହାଙ୍କର ଅଗ୍ନି ସ୍ଥାପିତ ଅଛି । ୩ । ୫ ସାଗ୍ନି ଶବ୍ଦ ଦେଖ ।

ଅ, ଶ୍ଲୋ,

୫ । ୧୫ ଶୌତ-ଅଗ୍ନିହୋତ୍ର,—ବେଦୋକ୍ତ ଅଗ୍ନିହୋତ୍ର ଯଜ୍ଞ । ଏହା ଦୁଇପ୍ରକାର, ମାସସାଧ୍ୟ ଓ ଯାବଜ୍ଜୀବନସାଧ୍ୟ ।

୫ । ୧୫ କୃଷ୍ଣାଜିନ ଅସ୍ତୀର୍ଣ୍ଣକରି । କୃଷ୍ଣସାର ଚର୍ମ ବିସ୍ତାରିତକରି ।

୫ । ୧୮ ବୃଷଣ,—କୋଷ ।

୫ । ୧୮ ମେଢ୍ର,—ଉପସ୍ଥ ।

୫ । ୧୯ ଶିଶ୍ନ,—ଉପସ୍ଥ ।

୫ । ୧୯ ଶମୀକାଷ୍ଠ,—ବୃକ୍ଷବିଶେଷ ।

୫ । ୧୯ ଅରଣି,—ଅଗ୍ନ୍ୟୁତ୍ପାଦକ କାଷ୍ଠ । ଯାହା ଘର୍ଷଣ କଲେ ଅଗ୍ନି ଉତ୍ପନ୍ନ ହୁଏ ।

୫ । ୨୦ ଜୁହୂ,—ପଲାଶକାଷ୍ଠନିର୍ମ୍ମିତ ଅର୍ଦ୍ଧଚନ୍ଦ୍ରାକାର ଯଜ୍ଞପାତ୍ର ।

୫ । ୨୦ ଉପସତ୍,—ଅଗ୍ନିବିଶେଷ, ଯଥା ଗାର୍ହପତ୍ୟୋ ଦକ୍ଷିଣାଗ୍ନି ସ୍ତଥୈବାହବନୀୟକଃ । ଏତେ ତ୍ରୟୋଗ୍ନୟ ସ୍ତେଷାଂ ମୁଖ୍ୟାଃ ଶେଷା ସ୍ତୋପସଦ ସ୍ତ୍ରୟଃ । ଇତି ଅଗ୍ନିପୁରାଣ ।

୫ । ୨୦ ଉଦୂଖଳ,—ଯହିଁରେ ଧାନ୍ୟାଦିପ୍ରଭୃତି କାଢ଼ିନେବାକୁ ହୁଏ ।

୫ । ୨୦ ମୂଷଳ,—ଯାହା ଦ୍ୱାରା ଉଦୂଖଳରେ ଧାନ୍ୟାଦି ପ୍ରଭୃତି କାଣ୍ଡିନେବାକୁ ହୁଏ ।

୫ । ୨୧ ପ୍ରୋକ୍ଷଣୀ,—ପ୍ରୋକ୍ଷଣୀପାତ୍ର, ଯହିଁରେ ଜଳ ରଖି ଯଜ୍ଞୀୟ ଦ୍ରବ୍ୟ ସିକ୍ତ କରା ଯାଏ ।

୫ । ୨୧ ଅଜ୍ୟସ୍ଥାଳୀ,—ଯହିଁରେ ଯଜ୍ଞଘୃତ ଥାଏ ।

୫ । ୨୨ ଅଗ୍ନିହୋତ୍ରୋପକରଣ,—ଅଗ୍ନିହୋତ୍ର ଯଜ୍ଞର ଉପଯୋଗୀ ନାନାବିଧ ଦ୍ରବ୍ୟ ।

୬ । ୩ ବଳାକା,—ବକକଣ୍ଠୀ । ବକଜାତିବିଶେଷ ।

୬ । ୩ ଟିଟ୍ଟିଭ,—ଟଠୀଭକପକ୍ଷୀ । ଟୀଠିପକ୍ଷୀ ।

୬ । ୩ ଅଟି,—ପକ୍ଷିବିଶେଷ ଶରାଳପକ୍ଷୀ ।

୬ । ୪ ଭାସ,—ଗୃଧ୍ର । କୁକ୍କୁଟ ।

୬ । ୪ ତିତ୍ତିରି,—ତିତ୍ତିର ପକ୍ଷୀ ।

୬ । ୬ ବଲ୍‌ଗୁଣୀ,—ବଲ୍‌ଗୁଲା । ପକ୍ଷିବିଶେଷ ।

ଅ, ଶ୍ଳୋ,

୬ । ୭ ଖଞ୍ଜରୀଟ,—ଖଞ୍ଜନପକ୍ଷୀ ।

୬ । ୭ ପ୍ଳବକ,—ପ୍ଳବପକ୍ଷୀ ।

୬ । ୭ ରକ୍ତପାଦ,—ଶୁକ୍ରପକ୍ଷୀ ।

୬ । ୭ କାରଣ୍ଡବ,—ହଂସବିଶେଷ ।

୬ । ୭ ପିଙ୍ଗଳ,—ପେଚକ, ନାଗବିଶେଷ ।

୬ । ୭ କୁରର,—ଉତ୍କ୍ରୋଶପକ୍ଷୀ ।

୬ । ୭ ଭାରଦ୍ୱାଜ,—ବ୍ୟାଘ୍ରାଟପକ୍ଷୀ ।

୬ । ୮ ଭେରୁଣ୍ଡ,—ପକ୍ଷୀବିଶେଷ, ଶ୍ୟେନ, ବାଜପକ୍ଷୀ ।

୬ । ୮ କପିଞ୍ଜଳ,—ଗୃଦ୍ଧକପକ୍ଷୀ ।

୬ । ୯ ନକୁଳ,—ବେଜି, ନେଉଳ ।

୬ । ୯ ଡୁଣ୍ଡୁଭ,—ସର୍ପବିଶେଷ ।

୬ । ୯ କୃଶର,—ସମାନଭାଗ ତିଳ ଓ ତଣ୍ଡୁଳର ଖେଚଡ଼ି ।

୬ । ୧୦ ଶଷ୍କୁଲୀ,—ଶଙ୍କାଳୁ ।

୬ । ୧୧ ବୃକ,—କେନ୍ଦୁଆବାଘ ବିଶେଷ ।

୬ । ୧୧ ତରକ୍ଷୁ,—ଏକପ୍ରକାର କେନ୍ଦୁଆବ୍ୟାଘ୍ର ।

୬ । ୧୨ ଗବୟ,—ଗୋ-ସଦୃଶ ଅଥଚ ଗଳକମ୍ବଳ ରହିତ ବନ୍ୟଜନ୍ତୁ ।

୬ । ୧୨ ରୁରୁ,—ମୃଗବିଶେଷ, ଚିତ୍ରମୃଗ ।

୬ । ୧୪ ବହ୍ନିବୀଜ,—ରଂ ଏହିମନ୍ତ୍ର ।

୬ । ୧୫ }
୧୦ । ୮ } ପ୍ରାଜାପତ୍ୟ,—୫।୧୨ ଟୀକା ଦେଖ ।

୬ । ୧୬ ଅତିକୃଚ୍ଛ୍ରବ୍ରତ,—ଏକ ୨ ମୁଷ୍ଟି ମାତ୍ର ଅନ୍ନଭୋଜନ କରି ନଅଦିନ ଯାପନ କରିବାକୁ ଅତିକୃଚ୍ଛ୍ରବ୍ରତ ବୋଲାଯାଏ । ୧୧।୨୧୩ ମୂଳ ଦେଖ ।

୬ । ୧୬ ଯାଗକ୍ରିୟାସକ୍ତ,—ଯଜ୍ଞାନୁଷ୍ଠାନନିରତ ।

୬ । ୧୭ କ୍ରିୟାହୀନ,—ଯେ ସନ୍ଧ୍ୟାବନ୍ଦନାଦି କରେ ନାହିଁ ।

୬ । ୧୮ ଅର୍ଦ୍ଧକୃଚ୍ଛ୍ର,—କୃଚ୍ଛ୍ରସାନ୍ତପନାଦିର ଅର୍ଦ୍ଧ ।

୬ । ୨୯ ଭଗ୍ନପୃଷ୍ଠ,—ଯହିଁରେ ଭଗ୍ନ ଚିହ୍ନ ଦେଉଥିବ ।

୬ । ୨୭ ସାନ୍ତପନବ୍ରତ,—କୃଚ୍ଛ୍ରସାନ୍ତପନ । ୫।୧୧ ଏବଂ ୯।୨୪ ଟୀକା ।

ଅ, ଶ୍ଳୋ,

୭ । ୨୭ ଅର୍ଦ୍ଧପ୍ରାଜାପତ୍ୟବ୍ରତ,—୫।୧୬ ଏବଂ ୮।୪୩ ଟୀକା ଦେଖ ।

୭ । ୨୭ ପାଦପ୍ରାଜାପତ୍ୟବ୍ରତ,—୫।୧୬ ଏବଂ ୮।୪୩ ଟୀକା ଦେଖ ।

୭ । ୨୮ ଅନ୍ତ୍ୟଜ,—ପଞ୍ଚମବର୍ଣ୍ଣ, ସଙ୍କରବ ଜାତି ।

୭ । ୨୯ ବ୍ରହ୍ମମନ୍ତ୍ର—ପ୍ରଣବ ପ୍ରଭୃତି ।

କୂର୍ଚ୍ଚମନ୍ତ୍ର—ହୂଂ ।

୭ । ୩୦ ଯାବକ—୪୭ପୃ, ନୋଟ ଦେଖ ।

୭ । ୩୨ ଉପସନ୍ୟାସ,— ଷଷ୍ଠ ଅଧ୍ୟାୟ ୩୪ ଶ୍ଳୋକ ଦେଖ ।

୭ । ୩୩ ବେଦପାବନ, - ବେଦଦ୍ୱାରା ପବିତ୍ରକାରକ ।

୭ । ୩୭ ଭୂବଦୁଷ୍ଟ,—ବର୍ଜ୍ଜିତ ।

୭ । ୩୬ ପଲ,—୮ ତୋଳା ।

୭ । ୩୮ କୁସୁମ୍ଭ,—କୁସୁମ ଫୁଲ ।

୭ । ୪୧ ଲୁବ୍ଧକୀ,—ବ୍ୟାଧପତ୍ନୀ, ବ୍ୟାଧକନ୍ୟା ।

୭ । ୪୧ ପୁକ୍କସୀ,—ଚଣ୍ଡାଳୀ ।

୭ । ୪୯ ଅଗ୍ନିଷ୍ଟୋମ୍ୟ,—ବସନ୍ତକାଳରେ କର୍ତ୍ତବ୍ୟ ଯାଗବିଶେଷ । ଏଥିରେ ସୋମରସ ପାନ କରିବାକୁ ହୁଏ । ଏହା ପଶ୍ୱାଦିସାଧ ।

୭ । ୫୦ ଡାମର,—ମଗ୍ନମସୀ କଣ୍ଠାଙ୍କଟ ।

୭ । ୩ ସ୍ରୁକ୍—ଯଜ୍ଞପାତ୍ର ବିଶେଷ ।

୭ । ୩ ସ୍ରୁବ,—ଖଦିରକାଷ୍ଠନିର୍ମିତ ଯଜ୍ଞପାତ୍ରବିଶେଷ ।

୭ । ୭ ଅର୍ତ୍ତବ,—ସ୍ତ୍ରୀଜାତିର ମାସିକ ଶୋଣିତ ।

୭ । ୧୪ ଅର୍ଦ୍ଧକୃଚ୍ଛ୍ର,—କୃଚ୍ଛ୍ରସାନ୍ତପନାଦିର ଅର୍ଦ୍ଧ ।

୭ । ୧୫ ପାଦୋନକୃଚ୍ଛ୍ର,—କୃଚ୍ଛ୍ରସାନ୍ତପନାଦିର ତ୍ରିପାଦ ଅର୍ଥାତ୍ ¾ ଅଂଶ ।

୭ । ୧୫ ପାଦକୃଚ୍ଛ୍ର,—କୃଚ୍ଛ୍ରସାନ୍ତପନାଦିର ଚତୁର୍ଥାଂଶ ।

୭ । ୩୦ ବଂଶବଲ୍କଳ—ବାଉଁଶର ଛାଲ ।

୭ । ୩୦ ପଟ୍ଟବସ୍ତ୍ର—ପାଟବସ୍ତ୍ର ।

୭ । ୩୦ ଲୋମଜବସ୍ତ୍ର—ପଶମୀ ଲୁଗା ।

୭ । ୩୦ କ୍ଷୌମ,—କ୍ରିମିକାତସୂତ୍ରନିର୍ମିତ ବସ୍ତ୍ର ।

୭ । ୩୨ ମୂଞ୍ଜ,—ମୌଞ୍ଜୀତୃଣ, ତୃଣବିଶେଷ ।

୭ । ୩୫ ଅନୁଲେପନ,—ଗାତ୍ରରେ ଗନ୍ଧାଦିଦ୍ରବ୍ୟ ଲେପନ ।

ଅ, ଶ୍ଳୋ,

୭ । ୩୭ ମଧୁପର୍କ,—ଦଧି, ଘୃତ, ଜଳ, ମଧୁ ଓ ଶର୍କରା ଏହି ପଞ୍ଚଦ୍ରବ୍ୟରେ ମଧୁପର୍କ ହୁଏ ।

୭ । ୩୫ ସୋମରସ,—ସୋମଲତାର ରସ, ମାଦକଦ୍ରବ୍ୟବିଶେଷ ।

୭ । ୩୮ ନିଷ୍ଠୀବନ,—ଥୁକ୍ପକାଇବାର ।

୭ । ୪୧ ଦେଶବିପ୍ଳବ,—ରାଜ୍ୟରେ ଉପଦ୍ରବ ।

୮ । ୧ ବନ୍ଧନସ୍ତମ୍ଭ,—ବାଁନ୍ଧିବାର ଖୁଣ୍ଟ ପ୍ରଭୃତି ।

୮ । ୧ ଅକାମତ,—ଗୃହସ୍ୱାମିଙ୍କର ଅନିଚ୍ଛାରେ ।

୮ । ୧ ଅକାମକୃତ,—ଅନିଚ୍ଛାପୂର୍ବକ କୃତ ।

୮ । ୨ ବେଦାଙ୍ଗ,—ଶିକ୍ଷାକଳ୍ପୋ ବ୍ୟାକରଣଂ ନିରୁକ୍ତଂ ଜ୍ୟୋତିଷାଂ ଗଣଃ । ଛନ୍ଦସାଂ ଚୟଶ୍ଚେତି ଷଡ଼ଙ୍ଗୋ ବେଦ ଉଚ୍ୟତେ ।

୮ । ୨ ସ୍ୱକର୍ମନିରତ,—ନିଜକର୍ତ୍ତବ୍ୟକର୍ମରେ ତତ୍ପର । ବ୍ରାହ୍ମଣଙ୍କର ସ୍ୱକର୍ମ ଯଜନ ଯାଜନ ଅଧ୍ୟୟନ ଅଧ୍ୟାପନ ଦାନ ଓ ପ୍ରତିଗ୍ରହ ।

୮ । ୪ ଇତ୍ୟାଦି,—ଏହି ଅଷ୍ଟମଅଧ୍ୟାୟର ୧୯ ଶ୍ଳୋକ ଅବଧି ୨୨: ପର୍ଯ୍ୟନ୍ତ ପାଠ କର ।

୮ । ୯ ବାକ୍ୟସଂଯମପୂର୍ବକ,—କୌଣସି କଥା ନ କହି ।

୮ । ୧୨ ଜାତିମାତ୍ରୋପଜୀବୀ,—ଯେଉଁ ବ୍ରାହ୍ମଣ ଅଧ୍ୟୟନ ଅଧ୍ୟାପନ ପ୍ରଭୃତି ପରିତ୍ୟାଗ କରି କେବଳ ପ୍ରତିଗ୍ରହଦ୍ୱାରା ଜୀବିକାନିର୍ବାହ କରେ ।

୮ । ୧୪ ବ୍ୟବସ୍ଥାପକ,—ଯେ ବ୍ୟବସ୍ଥା ଦିଅନ୍ତି ।

୮ । ୧୯ ଆହିତାଗ୍ନି,—ଯେ ବ୍ରାହ୍ମଣଙ୍କର ଜାତକର୍ମ ଅବଧି ଅନ୍ତ୍ୟେଷ୍ଟି-କ୍ରିୟା ପର୍ଯ୍ୟନ୍ତ ସମୁଦାୟ ସଂସ୍କାର ସାଧନାର୍ଥ ଯାବଜ୍ଜୀବନ ଏକ-ଅଗ୍ନି ସ୍ଥାପିତ ଥାଏ, କେତେବେଳେ ନିର୍ବାଣ ହୁଏ ନାହିଁ, ତାହାଙ୍କୁ ଆହିତାଗ୍ନି ବୋଲାଯାଏ ।

୮ । ୨୧ ସ୍ୱବୃତ୍ତି,—ବ୍ରାହ୍ମଣଙ୍କର ସ୍ୱବୃତ୍ତି ଯଜନ ଯାଜନ ଅଧ୍ୟୟନ ଅଧ୍ୟାପନ ଦାନ ପ୍ରତିଗ୍ରହ ।

୮ । ୨୨ ଅଭିଧେୟ,—ବାଚ୍ୟ ।

୮ । ୨୮ ପଞ୍ଚଯଜ୍ଞ,— ୨ । ୭ ଟୀକା ଦେଖ ।

୮ । ୨୮ ପଞ୍ଚେନ୍ଦ୍ରିୟପରାୟଣ,—ଯେଉଁମାନେ ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ୍ ଏହି ପଞ୍ଚେନ୍ଦ୍ରିୟ ଚରିତାର୍ଥକରଣରେ ତତ୍ପର ।

ଅ, ଶ୍ଳୋ,

୮ । ୩୪ ନର୍ବିକଳ୍ପହୃଦୟ୍ଯ,—ଅସନ୍ଦିଗ୍ଧଚିତ୍ତ ।

୮ । ୩୪ ଆଶ୍ରମୀ,—ସନ୍ୟାସୀ ।

୮ । ୪୦ ଉଦୂଖଳ,—ଦସ୍ତ୍ରଦ୍ୱାସ୍ୱ ମୂଷଳ ଧର ଯହିଁରେ ଧାନ୍ୟାଦ ପ୍ରଭୃତ କାଢ଼ିବାକୁ ହୁଏ ।

୮ । ୪୩ ପ୍ରାଜାପତ୍ୟ,—ପ୍ରାଜାପତ୍ୟବ୍ରତ ଶୃର ପ୍ରକାର । ପାପର ତାର-ତମ୍ୟ ଅନୁସାରେ ବବେଚନା କର ଚତୁର୍ବିଧ ପ୍ରାଜାପତ୍ୟ-ମଧ୍ୟରେ ଏକପ୍ରକାର ଅଚରଣ କ୍ରରବାକୁ ବ୍ୟବସ୍ଥା ଦେବେ । ଅଷ୍ଟମଅଧ୍ୟାୟ୍ରର ୪୩ ଶ୍ଳୋକ ଅବଧି ୪୭ ଶ୍ଳୋକପର୍ଯ୍ୟନ୍ତ ପାଠକର ।

୯ । ୧ ଉପଳ,—ପ୍ରସ୍ତର ।

୯ । ୬୦ ଯବସ,—ତୃଣ, ଘାସ ।

୯ । ୬୪ ସାନ୍ତପନବ୍ରତ,—ବ୍ରତବଶେଷ । ଯଥା ଗୋମୂତ୍ରଂ ଗୋମୟଂ କ୍ଷୀରଂ ଦଧି ସର୍ପିଃ କୁଶୋଦକଂ । ଏକରାତ୍ରୋପବାସଶ୍ଚ କୃଚ୍ଛ୍ରଂ ସାନ୍ତପନଂ ସ୍ମୃତଂ । ମନୁ ୧୧ ଅଧ୍ୟାୟ ।

୯ । ୬୪ ପ୍ରାଜାପତ୍ୟବ୍ରତ,—ଅଷ୍ଟମଅଧ୍ୟାୟ୍ରର ୪୩ ଶ୍ଳୋକ ଅବଧି ୪୭ ଶ୍ଳୋକପର୍ଯ୍ୟନ୍ତ ପାଠ କର ।

୯ । ୬୪ ତପ୍ତକୃଚ୍ଛ୍ର,—ବ୍ରତବଶେଷ । ଯଥା, ପୟୋ ଘୃତ ମୁଦକଂ ବାୟୁତପ୍ତଂ ପ୍ରତ୍ୟହଂ ପିବେତ୍ । ସ ତପ୍ତକୃଚ୍ଛ୍ରଃ । ଇତ ଗୌତମ-ସହିତା ।

୯ । ୬୪ ଅତକୃଚ୍ଛ୍ର,—୬ । ୧୬ ଟୀକା ଦେଖ ।

୯ । ୩୬ ଅର୍ଦ୍ଧକୃଚ୍ଛ୍ର,—ସାନ୍ତପନାଦବ୍ରତର ଅର୍ଦ୍ଧ ।

୯ । ୩୩ ମୁଞ୍ଜମୟ୍ୟବଜଡ଼ି,—ତୃଣବଶେଷନର୍ମିତ ରଜ୍ଜୁ ।

୯ । ୩୮ ଜଳାବତରଣପଥ,—ଜଳାବତରଣ ବାଟ ।

୯ । ୪୦ }
୧୦ । ୧୦ } ଚାନ୍ଦ୍ରାୟଣବ୍ରତ,—୪ । ୧୬ ଟୀକା ଦେଖ ।

୯ । ୫୮ ଅଜନ,— କୃଷ୍ଣସାରଚର୍ମ୍ମ ।

୯ । ୫୧ }
୧୦ । } କୃଚ୍ଛ୍ରଚାନ୍ଦ୍ରାୟଣ,—ଚତୁର୍ବିଧଚାନ୍ଦ୍ରାୟଣ ମଧ୍ୟରେ କଷ୍ଟସାଧ୍ୟ ଚାନ୍ଦ୍ରାୟଣବ୍ରତ ।

ଅ, ଶ୍ଳୋ,

୧୦ । ୧ ଶୂନ୍ୟାଯ୍ୟଣବ୍ରତ,—୧୦ ଅଧ୍ୟାୟ୍ର ୬ଶ୍ଳୋକଠାରୁ ୪ଶ୍ଳୋକପର୍ଯ୍ୟନ୍ତ ପାଠ କର ୪ । ୧୬ ଟୀକା ଦେଖ

୧୦ । ୩ କୁକ୍କୁଟାଣ୍ଡ —କୁକୁଡ଼ାଡମ୍ବ ।

୧୦ । ୬ ବପନ,—ମୁଣ୍ଡନ ।

୧୦ । ୬ } ବ୍ରହ୍ମକୂର୍ଚ୍ଚ,—ଗୋମୂତ୍ର ଗୋମୟ ଦଧି ଦୁଗ୍ଧ ଘୃତ ଏବଂ କୁ-
୧୧ । ୩ } ଶୋଦକ ବଧିପୂର୍ବକ ପାନ କରିବାକୁ ବ୍ରହ୍ମକୂର୍ଚ୍ଚ ବୋଲ୍ଯା-ଯାଏ । ଏହାର ବଧି ୧୧ ଅଧ୍ୟାୟ୍ର ୬୭ ଅବଧି ୩୬ ଶ୍ଳୋକପ-ର୍ଯ୍ୟନ୍ତ ଉକ୍ତ ହୋଇଅଛି ।

୧୦ । ୯ କୃଚ୍ଛ୍ର ପ୍ରାଜାପତ୍ୟ,—କଷ୍ଟସାଧ୍ୟ ପ୍ରାଜାପତ୍ୟବ୍ରତ । ୫ । ୧୬ ଟୀକା ଦେଖ ।

୧୦ । ୧୦ କୃଚ୍ଛ୍ରବ୍ରତ,—ତ୍ରିରାତ୍ରି ଉପବାସ କରିବାକୁ କୃଚ୍ଛ୍ରବ୍ରତ ବୋଲ୍ଯା-ଯାଏ । ୧୧ । ୩ ଟୀକା ଦେଖ ।

୧୦ । ୧୪ ଗୋମିଥୁନ,—ଏକ ବୃଷସହିତ ଏକ ଗାଭୀ ।

୧୦ । ୨୦ ଯାବକୌଦନ,—ଅର୍ଦ୍ଧପକ୍ୱଯବର ଅନ୍ନ ।

୧୦ । ୨୦ ଶଙ୍ଖପୁଷ୍ପୀ,—ପଙ୍ଖାନ୍ତୁଳ ।

୧୦ । ୨୫ }
୧୦ । ୨୭ } କୃଚ୍ଛ୍ରସାନ୍ତପନ,—୪ । ୧୧ ଟୀକା ଦେଖ ।

୧୦ । ୨୬ ଗିରିପ୍ରସ୍ରବଣ,—ଗିରିମଧ୍ୟ ଦେବାର ।

୧୦ । ୪୧ ଦର୍ଭ,—କୁଶ, ତୃଣ ।

୧୦ । ୪୧ ଚମସ,—ସ୍ୱନାମପ୍ରସିଦ୍ଧ ଯଜ୍ଞୀୟ ପାତ୍ରବିଶେଷ ।

୧୧ । ୧ ବିଲ୍ୱାକଫଳ,—ବାର୍ତ୍ତାକୁ ।

୧୧ । ୧ ବୃକ୍ଷର ନିର୍ଯ୍ୟାସ,—ଗଛର ଅଠା ।

୧୧ । ୧ କରକା,—ଶିଳ, ବରଫ ।

୧୧ । ୧୬ ଯାବକାନ୍ନ,—ଅପକ୍ୱଯବର ଅନ୍ନ ।

୧୧ । ୧୩ ଗନ୍ଧଦ୍ୱାରା,—ଗନ୍ଧଦ୍ୱାରାଂ ଦୁରାଧର୍ଷାଂ ନିତ୍ୟପୁଷ୍ଟାଂ କରୀଷିଣୀଂ । ଈଶ୍ୱରୀଂ ସର୍ବଭୂତାନାଂ ତ୍ୱାମିହୋପହ୍ୱୟେ ଶ୍ରିୟଂ ।

୧୧ । ୧୩ ଆପ୍ୟାୟସ୍ୱ,—ଆପ୍ୟାୟସ୍ୱ ସମେତୁତେ ବିଶ୍ୱତଃ ସୋମବୃଷ୍ଣ୍ୟଂ ଭବାବାଜସ୍ୟ ସଙ୍ଗଥେ ।

ଅ, ଶ୍ଳୋ,

୧୧ । ୧୩ ଦଧିକ୍ରାବ୍ଣ,—ଦଧିକ୍ରାବ୍ଣୋ ଽକାର୍ଷଂ ଜିଷ୍ଣୋରଶ୍ୱସ୍ୟ ବାଜିନଃ ସୁରଭିଣୋ ମୁଖାକରଂ ପ୍ରଣଆୟୁଂଷି ତାରିଷତ୍ ।

୧୧ । ୧୭ ବାମଦେବ୍ୟସାମ,—ସାମବେଦର ଯେଉଁ ଅଂଶଦ୍ୱାରା ବାମଦେବଙ୍କର ଉପାସନା ହୁଏ ।

୧୧ । ୬୦ ଭୃଜମିତ୍ର,—ଜାତିବିଶେଷ ।

୧୧ । ୬୦ ଅର୍ଦ୍ଧଶୀଣୀ,—ବ୍ରାହ୍ମଣଙ୍କଠାରୁ ବୈଶ୍ୟକନ୍ୟାଗର୍ଭରେ ଜାତ ।

୧୧ । ୩୬ ତେଜୋଽସି ଶୁକ୍ରମସ୍ୟ—ତେଜୋଽସି ଶୁକ୍ରମସ୍ୟ ମୃତମସିଧାମ-ନାମାସି ପ୍ରିୟଂଦେବାନାମନାଧୃଷ୍ଟଂ ଦେବଯଜନମସି ।

୧୧ । ୩୬ ଦେବସତ୍ୱା,—ଦେବସତ୍ୱା ସବିତୁଃ ପ୍ରସବେଽଶ୍ୱିନୌ ବାହୁଭ୍ୟାଂ ପୁଷ୍ଣୋ ହସ୍ତାଭ୍ୟାମାଦଧେ ।

୧୧ । ୩୬ ଅପୋହିଷ୍ଠା ମୟୋଭୁବ,—ଅପୋହିଷ୍ଠା ମୟୋ ଭୁବ ସ୍ତାନଉର୍ଜ୍ଜେ ଦଧାତନ ମହେରଣାୟ ଚକ୍ଷସେ ।

୧୧ । ୩୬ ମାନସ୍ତୋକେ,—ମାନସ୍ତୋକେ ତନୟେ ମାନ ଆୟୁଷି ମାନୋ ଗୋସୁମାନଃ ଅଶ୍ୱେଷୁରୀରିଷଃ । ମାନୋବୀରାନ୍ ରୁଦ୍ରଭାମି ନୋ-ଽବଧୀର୍ହବିଷ୍ମନ୍ତଃ ସଦମିତ୍ୱା ହବାମହେ ।

୧୧ । ୩୪ ଇରାବତୀ,—ଇରାବତୀ ଧେନୁମତୀ ହି ଭୂୟଂ ସୁବସୂନ ମନଂ ବେଦଶସ୍ୟା ବ୍ୟସ୍କଭନା ରୋଦସୀ ବିଷ୍ଣୁରେତେ ଦାଧର୍ଥଃ ପୃଥିବୀ ମଭିତୋ ମୟୂଖୈଃ ।

୧୧ । ୩୪ ଇଦଂବିଷ୍ଣୁ,—ଇଦଂବିଷ୍ଣୁ ର୍ବିଚକ୍ରମେ ତ୍ରେଧା ନିଦଧେ ପଦଂ ସମୂଢ଼ମସ୍ୟ ପାଂଶୁଳେ ।

୧୧ । ୩୪ ମାନସ୍ତୋକେ,—ତନୟେମାନ ଆୟୁଷିମାନୋ ଗୋଷୁମାନ ଅଶ୍ୱେଷୁରୀରିଷଃ । ମନୋ ବୀରାନ୍ ରୁଦ୍ରଭାମିନୋଽବଧୀ ର୍ହବିଷ୍ମନ୍ତଃ ସଦମି ତ୍ୱା ହବାମହେ ।

୧୧ । ୪୦ ଗବୟ,—ଗୋସଦୃଶ ବନ୍ୟଜନ୍ତୁବିଶେଷ ।

୧୧ । ୪୪ ପରପାକନିବୃତ୍ତ,—୧୧ । ୪୬ ଶ୍ଳୋକ ଦେଖ ।

୧୧ । ୪୪ ପରପାକନରତ,—୧୧ । ୪୭ ଶ୍ଳୋକ ଦେଖ ।

୧୧ । ୪୪ ଅପଚ,—୧୧ । ୪୮ ଶ୍ଳୋକ ଦେଖ ।

୧୧ । ୫୪ ସାଙ୍କର୍ଯ୍ୟ,—ସମବାୟ, ମିଳନ ।

ଅ, ଶ୍ଳୋ,

୧୨ । ୫ ପ୍ରବ୍ରଜ୍ୟା,—ସନ୍ନ୍ୟାସ ।

୧୨ । ୨୨ ଖଳଯଜ୍ଞ,—ଯଜ୍ଞବିଶେଷ ।

୧୨ । ୨୫ ଢଭ,—ପଁଝା ।

୧୨ । ୨୫ ଚୈତ୍ୟବୃକ୍ଷ,—ସର୍ବାପେକ୍ଷା ପ୍ରାଚୀନ ବୃକ୍ଷ ।

୧୨ । ୨୫ ସୋମବିକ୍ରୟିକାଷ୍ଠ,—ସୋମରସବିକ୍ରେତା ।

୧୨ । ୨୭ ଅସ୍ଥିସଞ୍ଚୟନ,—ମୃତବ୍ୟକ୍ତିର ସସ୍କାରବିଶେଷ । ଅନ୍ତ୍ୟେଷ୍ଟି-ପଦ୍ଧତି ଦେଖ ।

୧୨ । ୨୯ ଅଗ୍ନିକାର୍ଯ୍ୟ,—ରକ୍ଷିତଅଗ୍ନିରେ ହୋମ ପ୍ରଭୃତି ।

୧୨ । ୩୭ ଦୈବକର୍ମ,—ଦେବତାପୂଜା ଯାଗାଦି ।

୧୨ । ୩୭ ପୈତ୍ୟକର୍ମ,—ଶ୍ରାଦ୍ଧ ତର୍ପଣ ପ୍ରଭୃତି ।

୧୨ । ୪୧ ଅଗ୍ନିଚିତ ବ୍ରାହ୍ମଣ,—ସାଗ୍ନି ବ୍ରାହ୍ମଣ, ୩।୫ ସାଗ୍ନିଶବ୍ଦ-ଦେଖ ।

୧୨ । ୪୧ କପିଲା,—କାମଧେନୁ ।

୧୨ । ୪୧ ଭିକ୍ଷୁକ,—ଦ୍ୱିତୀୟ ଆଶ୍ରମାବଲମ୍ବୀ । ଯଥା, ବ୍ରହ୍ମଚର୍ଯ୍ୟାଂ କଲୌ ନାସ୍ତି ବାନପ୍ରସ୍ଥୋ ନପି ସୁବ୍ରତେ । ଗୃହସ୍ଥୋ ଭିକ୍ଷୁକଶ୍ଚୈବ ଆଶ୍ରମଦ୍ୱୌ ପ୍ରକୀର୍ତ୍ତିତୌ । ଭିକ୍ଷୁକେ ନପ୍ୟାଶ୍ରମେ ଦେବ ବେଦୋକ୍ତଂ ଦଣ୍ଡଧାରଣଂ । କଲୌ ନାସ୍ତ୍ୟେବ ନାସ୍ତ୍ୟେବ ଯତସ୍ତତ୍ ଶ୍ରୌତସଂସ୍କୃତଃ । ଶୈବାବଧୂତବିଧିନାବଧୂତାଶ୍ରମଧାରଣଂ । ତଦେବ କଥିତଂ ଭଦ୍ରେ ସନ୍ନ୍ୟାସଗ୍ରହଣଂ କଲୌ । ଇତି ମହାନିର୍ବାଣତନ୍ତ୍ରଂ ।

୧୨ । ୪୨ ଅରଣି,—ଯେଉଁ କାଷ୍ଠ ଘର୍ଷଣ କରି ଅଗ୍ନି ଉତ୍ପାଦନ କରିବାର ହୁଏ ।

୧୨ । ୪୨ କୃଷ୍ଣାଜିନ,—କୃଷ୍ଣସାର ଚର୍ମ୍ମ ।

୧୨ । ୪୭ ପ୍ରସୂତିକା,—ଯେଉଁ ନାରୀ ସନ୍ତାନ ପ୍ରସବ କରିଥାଏ ।

୧୨ । ୫୩ ନିଷିଦ୍ଧାଚରଣକାରୀ,—ଯେଉଁ ବ୍ୟକ୍ତି ଶାସ୍ତ୍ରନିଷେଧ ଲଙ୍ଘନ କରି ଯଥେଚ୍ଛାଚରଣରେ ପ୍ରବୃତ୍ତ ହୁଏ ।

୧୨ । ୫୫ ଅନ୍ତର୍ବନେ,—ଶୂନ୍ୟେ ।

୧୨ । ୫୭ ପ୍ରାଣାୟାମ,—୩ । ୪୭ ଟୀକା ଦେଖ ।

୧୨ । ୫୮ ରେତଃସେକ,—ବୀର୍ଯ୍ୟପାତ ।

୧୨ । ୭୩ ଯାବକାହାର,—ଅପକ୍ୱଯବଭକ୍ଷଣ ।